# ସାହିତ୍ୟ ଓ ସମାଲୋଚନା

## ପ୍ରଥମ ଭାଗ


ଲେଖକ—

'ଜୟନ୍ତୀ', 'ବୈଜୟନ୍ତୀ', 'ମାଧୁରୀ' ଓ 'ମାଧୁକରୀ' ପ୍ରଭୃତିର
କବି ଏବଂ ଅବସରପ୍ରାପ୍ତ କାବ୍ୟାପୂର୍ଣ୍ଣ

**ଶ୍ରୀ ନାରାୟଣମୋହନ ଦେ, ଏମ୍. ଏ.**



ଯୁଗ୍ମ ପ୍ରକାଶକ—

**ଉତ୍କଳ ବିଶ୍ୱବିଦ୍ୟାଳୟ ଓ ଗ୍ରନ୍ଥକାର**

ପ୍ରଥମ ସଂସ୍କରଣ





ମୂଲ୍ୟ ଟ ୨।    ( ଦୁଇ ଟଙ୍କା ଚାରିଅଣା ମାତ୍ର )

# ପ୍ରସ୍ତାବନା

ଇଂରାଜୀ ସାହିତ୍ୟରେ ଗଦ୍ୟ-ପ୍ରବନ୍ଧ ରଚନାର ଗୋଟିଏ ଅଭିନବ ଶୈଳୀ ମୋର ଦୃଷ୍ଟି ଆକର୍ଷଣ କଲା । ଦେଖିଲି ନବୀନପନ୍ଥୀ କେତେଜଣ ପ୍ରତିଭାଶାଳୀ ଲେଖକ ଉକ୍ତ ଶୈଳୀର ଅବତାରଣା କରି ଗୋଟିଏ ଉପଭୋଗ୍ୟ ସାହିତ୍ୟ ସୃଷ୍ଟି କରିଛନ୍ତି । ସେମାନଙ୍କର ଦୃଷ୍ଟିକୋଣ ପ୍ରାଚୀନ-ପନ୍ଥୀଙ୍କ ଦୃଷ୍ଟିକୋଣରୁ ଭିନ୍ନ ଥିଲା । ପ୍ରାଚୀନପନ୍ଥୀମାନେ ସତ୍ୟର ସ୍ୱରୂପସନ୍ଧାନରେ ନିବଦ୍ଧଦୃଷ୍ଟି ଥାଇ ସତ୍ୟର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ପ୍ରତି ଉଦାସୀନ ଥିଲେ ଅର୍ଥାତ୍ ସେମାନଙ୍କର କଳାଦୃଷ୍ଟି ନ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ନବୀନପନ୍ଥୀମାନେ କଳାବିତ୍ ଥିବାରୁ ସେମାନଙ୍କର କଳାଦୃଷ୍ଟି ସତ୍ୟର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ସନ୍ଧାନରେ ନିବଦ୍ଧ ଥିଲା । ପ୍ରକାଶିତ ବସ୍ତୁଠାରୁ ପ୍ରକାଶଭଙ୍ଗୀ ବା ଅଭିବ୍ୟକ୍ତି-ଛଟା ସେମାନଙ୍କର କଳାକୃତିର ଲକ୍ଷ୍ୟ ଥିଲା । ପୁରାତନ-ପନ୍ଥୀମାନେ ଦାର୍ଶନିକ ଗବେଷଣାମୂଳକ ଯୁକ୍ତିତର୍କସମ୍ବଳିତ ସିଦ୍ଧାନ୍ତ-ନିବନ୍ଧ ରଚନାକୁ ପ୍ରବନ୍ଧ ଆଖ୍ୟା ଦେଉଥିଲେ । ସେଥିରେ ରସ ପରିବେଷଣର କୌଣସି ଚେଷ୍ଟା ନ ଥିଲା । ନାନା ଗଭୀର ଆଲୋଚନା ସାହାଯ୍ୟରେ ସତ୍ୟର ସ୍ୱରୂପ ଉଦ୍‌ଘାଟନ କରି ମନୁଷ୍ୟର ବୋଧଭୂମି (Intellect) କୁ ସ୍ପର୍ଶ କରିବାହିଁ ସେମାନଙ୍କର ଉଦ୍ଦେଶ୍ୟ ଥିଲା । ତେଣୁ ସେମାନଙ୍କର ରଚନାରେ ରସର ସନ୍ଧାନ ନ ଥିଲା । ତେଣୁ ହୃଦୟକୁ ସ୍ପର୍ଶ କରିବା ଭଳି ରସସୃଷ୍ଟିର ଚେଷ୍ଟା ମଧ୍ୟ ନ ଥିଲା ।

କିନ୍ତୁ ନବୀନପନ୍ଥୀମାନେ ସତ୍ୟର ଶିବସୁନ୍ଦର ବିଗ୍ରହର ପ୍ରାଣ-ପ୍ରତିଷ୍ଠା କରି ପ୍ରବନ୍ଧକୁ ଭାରି ସରସ ଓ ଉପାଦେୟ କରି ଦେଲେ । ସେମାନଙ୍କର ରଚନାଶୈଳୀ ଓ ଅଭିବ୍ୟକ୍ତିଭଙ୍ଗୀ ଭାରି ପ୍ରାଣସ୍ପର୍ଶୀ ହୋଇ ଉଠିଲା । ସେମାନେ ଗାମ୍ଭୀର୍ଯ୍ୟ ଓ ମାଧୁର୍ଯ୍ୟର ଏକତ୍ର ସମାବେଶ ବିଧାନପୂର୍ବକ ପ୍ରବନ୍ଧଗୁଡ଼ିକୁ ଭାରି ସୁଖପାଠ୍ୟ କରିଦେଲେ । ସେମାନଙ୍କ

ବ୍ୟଙ୍ଗ-ବିନୋଦନ କଳାନିପୁଣ ହସ୍ତରେ ସତ୍ୟର ଗାମ୍ଭୀର୍ଯ୍ୟ ଓ ଔଦାର୍ଯ୍ୟର ମର୍ଯ୍ୟାଦାଲଙ୍ଘନ ନ ହୋଇ ବରଂ ତାହା ଭିତ୍ତି ସରସ ଓ ସୁନ୍ଦର ହେବାକୁ ଉତ୍କର୍ଷିତ ହୋଇଛି । ହୃଦୟକୁ ଆନନ୍ଦରସରେ ଆପ୍ଳୁତ କରିବା ଭଳି ରସ-ପରିବେଷଣ ପ୍ରତି ବିଶେଷ ଦୃଷ୍ଟି ଦିଆଯାଇଥିଲା । ବକ୍ତବ୍ୟ ବିଷୟଠାରୁ ଅଭିବ୍ୟକ୍ତିର ଭଙ୍ଗୀହିଁ ବେଶୀ ପ୍ରାଣସ୍ପର୍ଶୀ ହୋଇଥିଲା ।

ଏପରି ପ୍ରବନ୍ଧ ଉତ୍କଳ ସାହିତ୍ୟ, ଏମନ୍ତ କି ଭାରତ ସାହିତ୍ୟରେ ନାହିଁ କହିଲେ ଚଳେ । ଏଠାରେ ପ୍ରବନ୍ଧ ଲେଖକମାନେ ସାହିତ୍ୟିକ ନ ହୋଇ ଦାର୍ଶନିକ ହୋଇ ରହନ୍ତି । ବିଦ୍ୟାବତ୍ତାର ପରିଚାୟକ ରୂପେ ପ୍ରବନ୍ଧମାନଙ୍କର ସ୍ଥାନ ନିରୂପିତ ହୁଏ । କଳାନୈପୁଣ୍ୟର ବିଶେଷ ପରିଚୟ ସେଥିରେ ନ ଥାଏ । ରସ-ପରିବେଷଣର ପ୍ରାଚୁର୍ଯ୍ୟ ମଧ୍ୟ ନ ଥାଏ ।

କିନ୍ତୁ ନବୀନପନ୍ଥୀ ପ୍ରବନ୍ଧ ଲେଖକମାନେ ମୁଖ୍ୟତଃ କଳାବିତ୍ । ସେମାନଙ୍କର ସୌନ୍ଦର୍ଯ୍ୟଦୃଷ୍ଟି ରସସୃଷ୍ଟିରେ ନିବଦ୍ଧ । ବକ୍ତବ୍ୟ ବିଷୟ ଯାହା ହେଉନା କାହିଁକି, କଳାନୈପୁଣ୍ୟର ସାହାଯ୍ୟରେ ସେମାନେ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ଅବତାରଣା କରି ଗୋଟିଏ ହୃଦୟରଞ୍ଜନ ଅଭିନବ ସୃଷ୍ଟି କରନ୍ତି । ଅନେକ ସ୍ଥଳରେ ହାସ୍ୟରସର ପରିବେଷଣ ଓ ବ୍ୟଙ୍ଗ ବିନୋଦନ-କୌଶଳ ଅନିବାର୍ଯ୍ୟ ହୋଇ ପଡ଼େ । ଗାମ୍ଭୀର୍ଯ୍ୟ ସଙ୍ଗେ ମାଧୁର୍ଯ୍ୟର ବିଚିତ୍ର ସମନ୍ୱୟ ସାଧନ କରି ଲେଖକ ଲଳିତକଳାନୁମୋଦିତ ସୌନ୍ଦର୍ଯ୍ୟର ଉପାସନା କରନ୍ତି ।

ଏଭଳି ପ୍ରବନ୍ଧର ଉତ୍କଳ ସାହିତ୍ୟରେ ଅଭାବ ଥିଲା । କାଳନ୍ଦୀ ପାଣିଗ୍ରାହୀଙ୍କର ସାହିତ୍ୟ ସମ୍ଭାରରେ ଉକ୍ତ ଶୈଳୀର ମଧୁମୟୀ ସୂଚନା ଦେଖି ଆଶାୟୀ ହୋଇ ରହିଥିଲି । ତାଙ୍କର ପ୍ରାଥମିକ ସୂଚନାରୁ ପୂର୍ଣ୍ଣ ପରିଣତିର କଳ୍ପନା କରି ଶେଷରୁ ନିରାଶ ହେଲି । ଦଶବର୍ଷତଳେ ଯୁଗଧର୍ମ ପତ୍ରିକାରେ କେତୋଟି ଧର୍ମ ସମ୍ବନ୍ଧୀୟ ପ୍ରବନ୍ଧ ଲେଖିବାବେଳେ ଯେପରି ଉଦ୍‌ବେଗ ପାଇଥିଲି, ସେଥିରୁ ମନେ ମନେ ସ୍ଥିର କରିଥିଲି ଗଦ୍ୟ ଲେଖା ମୋ ହାତରୁ ଭଲ ବାହାରିବ ନାହିଁ । ପୁଣି ପୂର୍ଣ୍ଣଚନ୍ଦ୍ରଙ୍କ

ବଢ଼ସ୍ମରେ ଖଦ୍ୟୋତର କ୍ଷୀଣରଶ୍ମି ହାସ୍ୟାସ୍ପଦ ହୁଏ ଭାବି ଏହାର ବହୁ ପୂର୍ବରୁ ପଦ୍ୟ-ରଚନା ମଧ୍ୟ ଛାଡ଼ି ଥିଲି । ରେଭେନ୍‌ସା କଲେଜର ଅଧ୍ୟାପକ ପଦରୁ ଅବସର ଗ୍ରହଣ କରି ଭଦ୍ରକ କଲେଜର ଅଧ୍ୟକ୍ଷ ପଦବୀରେ ଅର୍ଦ୍ଧଚନ୍ଦ୍ର ସେବା କରି, ପରିଶେଷରେ ସମସ୍ତ ଉପାଧିରୂପ ବ୍ୟାଧି-ବିମୁକ୍ତ ହୋଇ ନିର୍ବିକାର ସୋଽହଂବାଦୀ ସାଜି ବସିଥିଲି । ଏପରି ସମୟରେ ମୋର ଅକୃତ୍ରିମ ବନ୍ଧୁ ଅବସରପ୍ରାପ୍ତ ପ୍ରଧାନତମ ସାହିତ୍ୟ-ସ୍ରଷ୍ଟା ଗୟାବାହାଦୁର ଅଶ୍ୱିନୀକାନ୍ତ ମହାନ୍ତି ମୋତେ ଗୋଟିଏ ଗଦ୍ୟ ପ୍ରବନ୍ଧ-ପୁସ୍ତକ ପ୍ରଣୟନ କରିବାକୁ କହିଲେ । ଦଶ ବର୍ଷ ତଳେ ସେ ମୋତେ ବୈଜୟନ୍ତୀ ନାମକ ପୁସ୍ତକ ପ୍ରଣୟନ କରାଇ ଭାରି ଖର୍ଚ୍ଚାନ୍ତ କରି ସାରିଥିଲେ । କାରଣ ତାଙ୍କର ପ୍ରଭୂତ ଚେଷ୍ଟାସତ୍ତ୍ୱେ ପୁସ୍ତକଟି ପାଠ୍ୟ-ପୁସ୍ତକରୂପେ ନିର୍ବାଚନମଣ୍ଡଳୀରେ ସ୍ୱୀକୃତ ହୋଇ ନ ଥିଲା । ତାହାର ବିଶେଷ କାରଣ ହେଲା ପୁସ୍ତକର ଗୌରଚନ୍ଦ୍ରିକାରେ "ପ୍ରଧାନତମ" ଓ "ଅକୃତ୍ରିମ ବନ୍ଧୁ" ଏହି ଦୁଇଟି ତଥାକଥିତ ମାରାତ୍ମକ ଭ୍ରମପ୍ରମାଦ ଜଣେ ସ୍ୱଳ୍ପବିଦ୍ୟ ପ୍ରବୀଣ ନିର୍ବାଚକଙ୍କର ଭାରି ଚକ୍ଷୁଶୂଳ ହେବାରୁ ପୁସ୍ତକଟି ବର୍ଜନୀୟ ବୋଲି ବିବେଚିତ ହେଲା । ଫଳରେ ସେଗୁଡ଼ିକ ଆଜିଯାଏ କିରାସିନ୍ ବାକସରେ ବନ୍ଦ ହୋଇ କୀଟଭୁକ୍ତ ଅବସ୍ଥାରେ ପଡ଼ି ରହିଛନ୍ତି । ମୋର ଏତିକି ସାନ୍ତ୍ୱନା ଯେ ଯାହା ହେଉ ଚଇତନ୍ୟ ବୈଷ୍ଣବଧର୍ମର "ଜୀବେ ଦୟା" ନାମକ ସର୍ବପ୍ରଧାନ ଅଙ୍ଗଟିର ଯାଜନକ୍ରିୟା ମୋର ଅନିଚ୍ଛା ସତ୍ତ୍ୱେ ସମ୍ପାଦିତ ହୋଇ ଯାଉଅଛି । ଭଗବାନ୍ ଯାହା କରନ୍ତି ମଙ୍ଗଳ କରନ୍ତି ବୋଲି ଏପରି ଅସହାୟ ଅବସ୍ଥାରେ ଆମ୍ଭେମାନେ ବିଶ୍ୱାସ କରିବାକୁ ବାଧ୍ୟ ହୋଇପଡ଼ୁ ।

ତେଣୁ ବନ୍ଧୁବରଙ୍କ ସନିର୍ବନ୍ଧ ଅନୁରୋଧଟି ମୋର ହୃଦୟକୁ ସେପରି କିଛି ଭାବରେ ସ୍ପର୍ଶ କରି ନ ଥିଲା । ଏବେ ତ ଗଦ୍ୟ, ତାହା ପରେ ପୁଣି ପାଠ୍ୟ ପୁସ୍ତକ । ଅପାଠ୍ୟ ପୁସ୍ତକ ଲେଖି ଛାପିଲେ ହୁଏ ତ ଭାଗ୍ୟପରିବର୍ତ୍ତନର ଆଶା ବା ଆଶଙ୍କା ହେଲେ ହୁଅନ୍ତା, କିନ୍ତୁ ପାଠ୍ୟ ପୁସ୍ତକ ଲେଖି କେବଳ "ଜୀବେ ଦୟା" ଅଙ୍ଗଟି କେତେ ଦିନ ଯାଏ

ସାଧୁଥିବ ? "ନାମେ ରୁଚି" ଓ "ବୈଷ୍ଣବ ସେବନ" ଅଙ୍ଗ ଦୁଇଟିର ଏକାବେଳକେ ନିର୍ଜଳା ଏକାଦଶୀ ବା ନିରମ୍ବୁ ଉପବାସ କେତେ ଦିନ ଚାଲିଥିବ ? ପୁଣି ହଠାତ୍ ମନେ ପଡ଼ିଲା :—

"ସୁହୃଦାଂ ହିତକାମାନାଂ ଯଃ ଶୃଣୋତି ନ ଭାଷିତଂ
ବିପତ୍ ସନ୍ନିହିତା ତସ୍ୟ ସ ନରଃ ଶତ୍ରୁନନ୍ଦନଃ !"

ଅଜାତଶତ୍ରୁ ମୋର ଶତ୍ରୁନନ୍ଦନ ହେବାକୁ ବାକି କଅଣ ଅଛି ? ମୋର ନର-ଶତ୍ରୁମାନେ ତ ମୋତେ ଯେପରି ଅଭିବାଦନ ଜଣାଇଛନ୍ତି, ସେଠା ତ ସହଜରେ ପାସୋରି ଯିବାର ନୁହେଁ । ତେଣୁ ହିତକାମୀ ସୁହୃଦଙ୍କ 'ଅମୃତଂ ବହୁଭାଷିତଂ' ବିଶ୍ୱର ବନ୍ଧୁବରଙ୍କ ଅଯାଚିତ ସ୍ନେହ-ସୂଚକ ଓ ଅହୈତୁକୀ ମମତାବ୍ୟଞ୍ଜକ ଭାଷଣଟି ଶୁଣିବାକୁ ବାଧ୍ୟ ହେଲି । ଅର୍ଥାତ୍ ଅନନ୍ୟୋପାୟ ହୋଇ ଲେଖନୀ ଧାରଣ କଲି । ଲେଖନୀଟି ବିଦ୍ୟୁତ୍ ଯନ୍ତ୍ରରେ ଚାଳିତ ହେଲା ପରି ଏପରି ଅପ୍ରତ୍ୟାଶିତ ଦ୍ରୁତଗତିରେ ଧାବମାନ ହେଲା ଯେ ସେଥିରୁ ମଧ୍ୟ ମନରେ ଘୋର ଆଶଙ୍କା ଜାତ ହେଲା ଏବଂ ହେବାର ମଧ୍ୟ କଥା । ଏପରି ଭଦ୍ରବର୍ତ୍ତିକାର ମଧ୍ୟ-ଦେଇ ଏକପକ୍ଷ ଅକ୍ଳାନ୍ତ ଲେଖନୀ ଚାଳନା କରି ବହୁ ପରିଶ୍ରମରେ ଭଦ୍ର-ସିନ୍ଧୁ ପାରି ହେଲି । ପ୍ରକାଶ ଆତଙ୍କ ସମୟାଭାବରୁ ପ୍ରଥମ ପାଣ୍ଡୁଲିପିଟି ସଂଶୋଧନ କରିବାର ସୁବିଧା ମୋତେ ମିଳି ନାହିଁ । ସହୃଦୟ ନାଟ୍ୟାଚାର୍ଯ୍ୟମାନେ ନିଜର ଅଦୋଷଦର୍ଶିତାର ନିଦର୍ଶନସ୍ୱରୂପ ସେଗୁଡ଼ିକ ଅନୁମୋଦନ କରି ମୋତେ ଭାରି ଉତ୍ସାହିତ କରିଥିବାରୁ ମୁଁ ସେମାନଙ୍କଠାରେ ଚିରକୃତଜ୍ଞ । ମୋର ଏହି ନବୀନ ତୀର୍ଥର ସର୍ବପ୍ରଧାନ ପଣ୍ଡା ଓ ପ୍ରଦର୍ଶକରୂପେ ରାୟବାହାଦୁରଙ୍କ ଦାବୀ ଜ୍ୟେଷ୍ଠ ବେଶୀ; କିନ୍ତୁ ସେ ଗତ ଥର ମୋତେ ଭାରି ଖର୍ଚ୍ଚାନ୍ତ କରି ଏକରକମ ପ୍ରାଣାନ୍ତ କରି ଦେଇଥିବାରୁ ଏଥର ତାଙ୍କ ଦାବୀ ସମର୍ଥନ କରିବାକୁ ସମୟ-ବିଶେଷର ପ୍ରତୀକ୍ଷାରେ ରହିଲି ।

ଏହି ନବୀନ ଶୈଳୀର ପ୍ରବନ୍ଧଗୁଡ଼ିକର ଅନୁସୃତ ଚିନ୍ତାଧାରା ବିଶ୍ଲେଷଣ କରିବା ପୂର୍ବରୁ ମୋର ଦୃଷ୍ଟିକୋଣର କିଞ୍ଚିତ୍ ପରିଚୟ ଦେଇବା ବାଞ୍ଛନୀୟ ।

୧ । ମୁଁ ଅଳୀକନ ସାହିତ୍ୟାଗ୍ରଣୀଙ୍କ ଅଧ୍ୟାସନ ଅଳଙ୍କୃତ କରି ବାଗ୍‌ଦେବୀଙ୍କ ଉପାସନା କରି ଆସିଥିବାରୁ ଆଜି ମଧ୍ୟ ନିଖିଳ ଜନତା-ସେବାରେ ବସି ବସି ଦେଖୁଛି, ସୁକୁମାରମତି ବାଳକବାଳିକାମାନଙ୍କ ସାରଲ୍ୟମଣ୍ଡିତ ମୁଖର ଅଜ୍ଞତାବ୍ୟଞ୍ଜକ ମଧୁର ହାସ୍ୟରେଖା ମୋ ଆଖିରେ ନାଚି ଯାଉଛି; ସୁତରାଂ ସେହିମାନଙ୍କୁ ହିଁ ମୁଖ୍ୟ ଶ୍ରୋତୃପଦରେ ବରଣ କରି ନିଖିଳର ମନୋହରଣ କରିବାର କ୍ଷୀଣଚେଷ୍ଟା କରୁଅଛି । ସୁତରାଂ ଏଥିରେ ପ୍ରଗାଢ଼ ଅଭିଜ୍ଞତାର ନିଦର୍ଶନସ୍ୱରୂପ ବିଜ୍ଞମଣିମାନଙ୍କର ମାର୍ଜିତରୁଚିର ଅନୁକୂଳ ବିଶେଷ କିଛି ନ ଥିବାର କଥା । ତେବେ ଛତ୍ରଛାତ୍ରୀମାନଙ୍କ ଶିଶୁସୁଲଭ ଅଜ୍ଞତା ଦୂର କରିବାର ଉପକରଣ ଏଥିରେ ଯଥେଷ୍ଟ ଅଛି । ସେମାନେ ଏତଦ୍ଦ୍ୱାରା ସାହିତ୍ୟବିଷୟକ କୌଣସି ନୂତନ ତଥ୍ୟ ବା ନବୀନ ଆସ୍ୱାଦନ ଅଥବା ନବୀନ ଦୃଷ୍ଟି-କୋଣର ସନ୍ଧାନ ପାଇଲେ ମୋର ଶ୍ରମ ସାର୍ଥକ ହେବ ଓ ରାୟବାହାଦୁରଙ୍କ ପ୍ରଦତ୍ତ ଉତ୍ସାହ ମଧ୍ୟ ସାଫଲ୍ୟମଣ୍ଡିତ ହେବ ।

୨ । ନବୀନପନ୍ଥୀ ଓ ପ୍ରାଚୀନପନ୍ଥୀ ସାହିତ୍ୟରସିକମାନଙ୍କ ମଧ୍ୟରେ ଅନେକ ଦିନରୁ ମନ କଷାକଷି ଚାଲିଅଛି । ସମୟ ସମୟରେ ତାହା ଟିକିଏ ଉଗ୍ରାବସ୍ଥା ଆକାର ଧାରଣ କରିବାରୁ ବାଦାନୁବାଦସୁଲଭ ତୁମୁଳ ବାକ୍ୟୁଦ୍ଧର ସୃଷ୍ଟି କରେ । ସେଥିରୁ ମୋର ଦୁର୍ବଳ ହୃଦୟରେ ସମୟ ସମୟରେ କ୍ଷଣିକ ଅସ୍ୱାସ୍ଥ୍ୟକର ଆନ୍ଦୋଳନ ଜାତ କରିଦିଏ । ସେହି ଆନ୍ଦୋଳନର ଘାତପ୍ରତିଘାତଜନିତ ବିକ୍ଷୋଭତରଙ୍ଗର ପ୍ରତିକ୍ରିୟା ଏହି ପ୍ରବନ୍ଧମାନଙ୍କରେ ସ୍ଥାନବିଶେଷରେ ପରିଲକ୍ଷିତ ହେଲେ ହୋଇପାରେ ।

୩ । ଏହି ମନୋମାଳିନ୍ୟର ଅବୈଧ ପରିଣତିରୂପେ ମହାପୁରୁଷ-ମାନଙ୍କ ମର୍ଯ୍ୟାଦା ଲଙ୍ଘନର ସୂଚନା ମଧ୍ୟ ମିଳେ । ଅର୍ବାଚୀନମାନଙ୍କ

ପକ୍ଷରେ ପ୍ରାଚୀନମାନଙ୍କ ପୁରାଣ ମହତ୍ତ୍ୱମାନ୍ତ୍ର ଖର୍ବ କରିବାର ସାହିତ୍ୟିକ ଅପଚେଷ୍ଟା ମୋର ହୃଦୟରେ ପ୍ରଚଣ୍ଡ ଆଘାତ କରିଥିବାରୁ, ଉକ୍ତ ପ୍ରସଙ୍ଗମାନ ଏକରକମ ଅପ୍ରାସଙ୍ଗିକ ଭାବରେ ଅକସ୍ମାତ୍ ଆବିର୍ଭୂତ ହୋଇ ମୋର ରଚନାଶୈଳୀକୁ ଟିକିଏ ଅସହିଷ୍ଣୁ କରି ଦେଇଥିବାର ଆଶଙ୍କା ଅଛି ! ମୋର ଆବେଗଭରା ଅଭିବ୍ୟକ୍ତି ଭଙ୍ଗୀରେ ତ୍ରୁଟି ଥିଲେ ଥାଇପାରେ । କିନ୍ତୁ ବକ୍ଷ୍ୟମାଣ ବିଷୟରେ ମୁଁ ଧ୍ରୁବଲକ୍ଷ୍ୟ—ମୋର ଦୃଷ୍ଟିକୋଣ ସମଦର୍ଶୀ ଓ ପକ୍ଷପାତଶୂନ୍ୟ ।

୪ । ପୁଣି ପ୍ରଖ୍ୟାତଯଶା ମହାପୁରୁଷମାନଙ୍କର ମର୍ଯ୍ୟାଦାଲଙ୍ଘନପଟୁ ନବୀନପନ୍ଥୀ ଅର୍ବାଚୀନମାନଙ୍କର ଏକଦେଶଦର୍ଶିତା ଦର୍ଶାଇବାକୁ ଯାଇ ମୁଁ ଯେଉଁ ସିଦ୍ଧାନ୍ତଗୁଡ଼ିକ ପରିବେଷଣ କରିଅଛି ସେଗୁଡ଼ିକର ଅନୁପାନ ଟିକିଏ କଡ଼ା ହୋଇଥାଇ ପାରେ । କିନ୍ତୁ ଉକ୍ତବିଧ କଟୂକ୍ତିର କ୍ୟପଦେଶରେ ବାତ୍ସଲ୍ୟର ମଧୁମୟୀ ଧାରା ଅନ୍ତଃସଲିଳା ଫଲ୍‌ଗୁ ପରି ନିରନ୍ତର ପ୍ରବାହିତ ହେଉଥିବାର ସନ୍ଧାନ ରଖିବା ଉଚିତ । ମୋର ଜ୍ୟେଷ୍ଠପୁତ୍ର ମୋର ପିତୃସୁଲଭ ତାଡ଼ନା ଭର୍ତ୍ସନାର ଜ୍ୟେଷ୍ଠାଂଶ ଚିରକାଳ ଭୋଗ କରି ଆସୁଥିବା ବଳରେ ପୈତୃକ ସ୍ନେହମମତାର ଜ୍ୟେଷ୍ଠାଂଶ ମଧ୍ୟ ଦାବୀ କରି ତାହାର ଅନୁଜମାନଙ୍କ ଉପରେ ପଶୁରାଜସୁଲଭ ଏକାଧିପତ୍ୟ ବିସ୍ତାର କରିଥାଏ ବୋଲି ଶୁଣେ । ପୁଣି ଦୋଷ ଦେଖାଇଦେବା ପରମ ଶୁଭାନୁଧ୍ୟାୟୀ ବନ୍ଧୁର ପ୍ରଥମ କର୍ତ୍ତବ୍ୟ । ତେବେ ବିଷକୁମ୍ଭ ପୟୋମୁଖଙ୍କର କଥା ସ୍ୱତନ୍ତ୍ର । ପୁଣି ସତ୍ୟ ପ୍ରାୟ ସବୁବେଳେ ଅପ୍ରୀତିକର ହୁଏ, ବିଶେଷତଃ ଏହି ସ୍ତାବକବହୁଳ ଯୁଗରେ । ପୁଣି ହୃଦୟର ଆବେଗପୂର୍ଣ୍ଣ ଉଚ୍ଛ୍ୱାସକୁ ସଂଯତ କରି ଅପେକ୍ଷାକୃତ ନରମ କରିଦେଲେ ସତ୍ୟର ଅପଳାପ ହୁଏ । ଓଜସ୍ୱିନୀ ଭର୍ତ୍ସନାପୂର୍ଣ୍ଣ କଟୂକ୍ତିର ସ୍ଥାନ ମଧ୍ୟ ଅଛି । ସମୟ ସମୟରେ ତାହା ରସସୃଷ୍ଟିର ପୋଷକତା କରେ ବୋଲି ରସଶାସ୍ତ୍ରର ନିର୍ଦ୍ଦେଶ ଅଛି; ତାହା ବଳିଷ୍ଠ ଭାବପ୍ରବଣ ହୃଦୟବତ୍ତାର ପରିଚାୟକ ମାତ୍ର । ତେବେ କିଛି ତ୍ରୁଟି ହୋଇ ଯାଇଥିଲେ ତାହା ଏହି ଦୃଷ୍ଟିରେ ମାର୍ଜନୀୟ ।

୫ । ନବୀନପନ୍ଥୀ ଓ ପ୍ରାଚୀନପନ୍ଥୀ ସମସ୍ତେ ଯେ ମୋର ସଙ୍କୀର୍ଣ୍ଣ ଦୃଷ୍ଟିକୋଣରୁ ବିଷୟଟି ପର୍ଯ୍ୟାଲୋଚନା କରି ମୋ ସଙ୍ଗରେ ଏକମତ ହେବେ, ଏପରି ଆଶଙ୍କା ମୋର ନାହିଁ । ସ୍ଥାନେ ସ୍ଥାନେ କାଳ୍ପନିକ ମିଳନ-ମନ୍ଦିର ପ୍ରତିଷ୍ଠାର ବ୍ୟବସ୍ଥା ହେଲେ ପରସ୍ପର ମଧ୍ୟରେ ଭାବର ଆଦାନପ୍ରଦାନର ସୁବିଧା ହୁଅନ୍ତା । ପତ୍ର-ପତ୍ରିକାର ସାହାଯ୍ୟରେ ପରୋକ୍ଷ ଭାବବିନିମୟ ସବୁବେଳେ ଶୁଭଫଳପ୍ରଦ ହୁଏ ନାହିଁ । ବରଂ ମନୋମାଳିନ୍ୟର ପ୍ରସାର ବଢ଼ିଯାଇ ପାରେ । ମୁଁ କି ନବୀନପନ୍ଥୀ କି ପ୍ରାଚୀନପନ୍ଥୀ—କୌଣସି ପନ୍ଥାର ନିଷ୍ଠାପର ସେବକ ହୋଇ ନ ପାରିବାରୁ ଏକପ୍ରକାର ନାନାପନ୍ଥୀ ହୋଇ ବୃଷ୍ଟିମୂଷିକାକ୍ଷା ଗ୍ରହଣ କରିଅଛି । ସୁତରାଂ କୌଣସି ସମ୍ପ୍ରଦାୟର ପନ୍ଥା ବା କନ୍ଥା ପ୍ରତି ମୋର ପକ୍ଷପାତିତା ନାହିଁ । "ମାଧୂକରୀ" କରିବାକୁ ବାହାରି ମଧୁକର କଅଣ ରଜନୀଗନ୍ଧା ବା ପ୍ରଭାତନଳିନୀ ମଧ୍ୟରେ ବଛା ବାଛି ବିଚାର କରେ ? ଇତି ।

ଲେଖକ—

ଶ୍ରୀ ନାରାୟଣ ମୋହନ ଦେ

# ସୂଚୀ

| ବିଷୟ | ପୃଷ୍ଠାଙ୍କ |
| --- | --- |
| ୧। ଜୀବନରେ ଅପରାବିଦ୍ୟା, ପରାବିଦ୍ୟା ଓ କଳାର ସ୍ଥାନ | ୧—୩୦ |
| ୨। କାବ୍ୟର ମୌଳିକତା, ସମାଲୋଚନା ଓ ସଞ୍ଜସୃଜନବାଦ | ୩୧—୫୯ |
| ୩। ଦୃଶ୍ୟକାବ୍ୟର ବିଶିଷ୍ଟତା | ୬୦—୭୦ |
| ୪। କାବ୍ୟରେ କଳା ଓ ନୀତିର ସ୍ଥାନ | ୭୧—୮୧ |
| ୫। ବିଶ୍ୱକବି ରବୀନ୍ଦ୍ରନାଥ | ୮୨—୯୫ |
| ୬। କାବ୍ୟ ବା ସାହିତ୍ୟ ଏବଂ ଆଧୁନିକ ଦୃଷ୍ଟିକୋଣ | ୯୬—୧୨୧ |

# ସଂଶୋଧନ-ପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | | ଶୁଦ୍ଧ |
|---|---|---|---|---|
| ୨ ... | ୩ | ଥଭଡ | — | ଅଚ୍ଛଡ଼ |
| ୧୧ ... | ୧୫ | ଥଚଳ | — | ଅଚଳା |
| ୧୭ | ୫ ... | ବଗ୍ରଦ୍ଧ | — | ବଗ୍ରଦ୍ଧଲେ |
| ୨୭ | ୧୮ ... | ଏଦ୍ଧ | — | ଏଦ୍ଧା |
| ,, | ୧୨ ... | ଏଦ୍ଧ | — | ଏଦ୍ଧା |
| ୨୮ | ୧୭ ... | ବୃଟୀସ୍ତ | — | ବୃଟୀସ୍ତା |
| ୩୨ | ୫ ... | ଗ୍ନେରଚୂଡ଼ମଣି | — | ଚୌର-ଚୂଡ଼ାମଣି |
| ,, | ୧୦ ... | ଭୂମ | — | ଭୂମି |
| ୪୨ ... | ୧୩ | ପର୍ବେବେଷଣ | — | ପର୍ବେବେଶନ |
| ୫୪ | ୭ | "ଖ" | — | "ଖ" ର |
| ୫୭ ... | ୧ | ଶ୍ରଯ୍ୟେସ୍କର | — | ଶ୍ରେୟସ୍କର |
| ୫୯ | ୨୪ | ରହ୍ଵବା | — | କହ୍ଵବା |
| ୭୪ | ୧୦ | ଅଦ୍ଵେହ୍ଳକୀ | — | ଅଦ୍ୱୈହ୍ଳକୀ |
| ୭୭ | ୨୨ | ତକ୍ଷ୍ଣ | — | ଖଣ୍ଣ |
| ୮୧ | ୬ | ବଡର | — | ବୃଦ୍ଧର |
| ୮୪ | ୧୨ | ମଳଭଣ୍ଡ | — | ମୂଳଭଣ୍ଡ |
| ୯୧ | ୧୭ | ପ୍ରାଚୀନ | — | ପ୍ରାଚୀନା |
| ୯୫ | ୧୦ ... | ଯେ | — | ଯେ ଜନ |
| ୧୦୦ | ୭ ... | ଅଧ୍ୟାତ୍ମବଞ୍ଚନର | — | ଅଧ୍ୟାତ୍ମବଞ୍ଚନ |
| ୧୦୧ | ୧୧ ... | ରଚନେ | — | ଚରନେ |
| ୧୦୬ | ୨୦ ... | ଜନତା | — | ଜନତାକୁ |
| ୧୧୧ | ୨୦ | ଭୃସିବାକୁ | — | ଭୃସିପିବାକୁ |

## ଜୀବନରେ ଅପର୍ ବିଦ୍ୟା, ପର୍ ବିଦ୍ୟା ଓ ଲଳିତ କଳାର ସ୍ଥାନ

## ବା

## ବିଜ୍ଞାନ ଓ କଳା

"ସେ ଜଣେ ଭଲ ଲୋକ"— ଏ କଥା କହିଲେ ଆମ୍ଭେମାନେ ସାଧାରଣତଃ କଅଣ ବୁଝୁଁ ? ଏ ବିଷୟଟି ଖୁବ ଅଭିନିବେଶ ସହିତ ବିଚାର କରି ଦେଖିବା ଉଚିତ। ମନୁଷ୍ୟର କ୍ଷିତ୍ୟପ୍‌ତେଜମରୁଦ୍‌ବ୍ୟୋମ ଏହି ପଞ୍ଚଭୂତରେ ଗଢ଼ା ଗୋଟିଏ ଜଡ଼ ଶରୀର ଅଛି। ତାହା ଜଡ଼ବିଜ୍ଞାନର ସକଳ ନିୟମର ବଶବର୍ତ୍ତୀ। ସେହି ଦେହଟିର ଭରଣପୋଷଣ, ଲାଳନ-ପାଳନ, ତଥା ସର୍ବବିଧ ମଣ୍ଡନ ତାହାର କର୍ତ୍ତବ୍ୟ। ସେହି ଦେହର ସ୍ୱାସ୍ଥ୍ୟରକ୍ଷା ତାହାର ସର୍ବାଦୌ ବିଧେୟ। "ଶରୀରମାଦ୍ୟଂ ଖଳୁ ଧର୍ମ-ସାଧନଂ"। ସେହି ଦେହର ସ୍ୱାସ୍ଥ୍ୟ ଉପରେହିଁ ତାହାର ଭଲ ମନ୍ଦ ଅନେକଟା ନିର୍ଭର କରେ। ସ୍ୱାସ୍ଥ୍ୟହାନି ନାନା ଶୋକ ଦୁଃଖ ଓ ଜ୍ୱାଳାଯନ୍ତ୍ରଣାର କାରଣ ହୁଏ ଏବଂ ତାହାର ଭବିଷ୍ୟତ୍ ଜୀବନର ସର୍ବାଙ୍ଗୀନ ଉନ୍ନତିର ମହା ଅନ୍ତରାୟ ହୋଇ ଉଠେ। ସୁତରାଂ ପ୍ରତ୍ୟେକ ଦେହଧାରୀର ତାହାର ପଞ୍ଚଭୂତଗଠିତ ଦେହଟିକୁ ସୁଚାରୁରୂପେ ରକ୍ଷା କରିବା କର୍ତ୍ତବ୍ୟ। ପୁଷ୍ଟିକର ଖାଦ୍ୟପେୟଠାରୁ ମହାର୍ଘ ବସନ ଭୂଷଣକୁ ମଧ୍ୟ ସେହି ଦେହର ପୋଷଣଠାରୁ ମଣ୍ଡନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟର ଉପଯୋଗୀ କରିବାକୁ ଲୋକେ ସର୍ବଦା ବ୍ୟସ୍ତ।

ପୁଣି ଏହି ଦେହାଭ୍ୟନ୍ତରରେ ମନୁଷ୍ୟର ଗୋଟିଏ ଈଶ୍ୱରଦତ୍ତ ବୋଧଶକ୍ତି ଅଛି। ତାହାଦ୍ୱାରା ସେ ସମସ୍ତ ଇନ୍ଦ୍ରିୟଗ୍ରାହ୍ୟ ଜଗତର ଜ୍ଞାନ ଅର୍ଜନ କରି ଜୀବିକା ନିର୍ବାହ କରେ। ସେହି ମାନସିକ ବୃତ୍ତିର ଅନୁଶୀଳନରେ ମନୁଷ୍ୟ ସ୍ୱୀୟ ମନୀଷାବଳରେ ପ୍ରଭୂତ ଜ୍ଞାନ ଅର୍ଜ୍ଜନ

ହୋଇ ପାରେ । ବଡ଼ ବଡ଼ ମେଧାବୀ ପଣ୍ଡିତମାନଙ୍କ ମାନସିକ ଉତ୍କର୍ଷ ଫଳବିଶେଷରେ ଭିନ୍ନ ବିଷୟ ଉତ୍ପାଦନ କରେ । କେହି କେହି ଅଲୌକିକ ମାନସିକ ଶକ୍ତିବଳରେ ଅଦ୍ଭୁତ ଶ୍ରୁତିଧର, କେହି ବା ସ୍ମୃତିଧର, କେହି ବା କବି, କେହି ବା ଉଚ୍ଚକୋଟିର ବିଜ୍ଞାନବେତ୍ତା ଇତ୍ୟାଦି ନାନାଭାବରେ ମାନସିକ ବୃତ୍ତିର ଅନୁଶୀଳନ କରି ଯଶସ୍ୱୀ ହୁଅନ୍ତି । ବିଶ୍ୱଜଗତର ବାଣୀପୀଠରେ ସେମାନଙ୍କର ସ୍ଥାନ ଖୁବ ଉଚ୍ଚ । ସେମାନେ ବିଶ୍ୱବାସୀଙ୍କ ପ୍ରଭୂତ କଲ୍ୟାଣ ସାଧନ କରି ଅମର ହୁଅନ୍ତି । ସେମାନେ ବିଶ୍ୱର ନମସ୍ୟ ।

ପୁଣି ଏହି ମନ ବା ବୋଧଶକ୍ତି ଛଡ଼ା ମନୁଷ୍ୟର ଆଉରି ଗୋଟିଏ ବୃତ୍ତି ଅଛି—ସେ ତାହାର ହୃଦୟ । ହୃଦୟ ନ ଥିଲେ ପ୍ରତ୍ୟେକ ଦେହଧାରୀ ମନୁଷ୍ୟ କେବଳ ପ୍ରଗାଢ଼ ମାନସିକ ଅନୁଶୀଳନଦ୍ୱାରା ପ୍ରଭୂତ ଜ୍ଞାନାର୍ଜନକ୍ଷମ ହେଲେ ସୁଦ୍ଧା ଠିକ ମନୁଷ୍ୟପଦବାଚ୍ୟ ହୋଇ ପାରେ କି ? ପୁଣି ସେହି ପୂର୍ବ ପ୍ରଶ୍ନଟି ଉତ୍‌ଥାପନ କରି ଦେଖାଯାଉ । "ସେ ଜଣେ ଭଲ ଲୋକ" ବୋଇଲେ ସାଧାରଣତଃ ଲୋକେ କଅଣ ବୁଝନ୍ତି ? ଯାହାର ଶରୀରଟି ଖୁବ ସୁନ୍ଦର, ସୁଢ଼ଳ, ସୁସ୍ଥ ଓ ସବଳ; କିନ୍ତୁ ଯଦି ତାହାର ମାନସିକ ତଥା ହୃଦୟର ବୃତ୍ତିଗୁଡ଼ିକ ଖୁବ ଅପରିପକ୍ୱ ଓ ନିକୃଷ୍ଟ ହୁଏ, ତେବେ ସେପରି ହୃଦୟହୀନ, ନିଷ୍ଠୁର ଗଣ୍ଡମୂର୍ଖ ସୁନ୍ଦର ଶରୀରଧାରୀ ଲୋକକୁ କେହି ଭଲ ଲୋକ ଆଖ୍ୟା ଦେବେ କି ? ପୁଣି ଖୁବ ସୁସ୍ଥ ସବଳ ଦେହବିଶିଷ୍ଟ କାର୍ତ୍ତିକେୟଙ୍କ ପରି ପରମ ରୂପବାନ୍ ଓ ବିଦ୍ୟାବୁଦ୍ଧିବଳରେ ନେପୋଲିୟନଙ୍କ ପରି ମହାଦିଗ୍‌ବିଜୟୀ କିମ୍ବା ହିଟଲରଙ୍କ ପରି ମହାଶକ୍ତି-ଶାଳୀ ରାଜନୀତିଜ୍ଞଙ୍କୁ କେହି ଭଲ ଲୋକ କିମ୍ବା ମହାତ୍ମା କହିବେ କି ? କାରଣ ସେମାନଙ୍କ ହୃଦୟବୃତ୍ତି ଗୁଡ଼ିକ ସମ୍ୟକ୍ କର୍ଷିତ ହୋଇ ନ ଥିବାରୁ ସେମାନଙ୍କର ମନୁଷ୍ୟତ୍ୱର ପୂର୍ଣ୍ଣବିକାଶ ସମ୍ଭବ ହୋଇ ନାହିଁ । ଏପରି ବିଚାର କରି ଦେଖିଲେ ସହଜରେ ବୁଝାଯିବ ଯେ ମନୁଷ୍ୟର ଦେହ, ମନ ଓ ହୃଦୟ ମଧ୍ୟରେ ହୃଦୟହିଁ ତାହାର ମନୁଷ୍ୟତ୍ୱର ଆଧାର । ତାହାର ହୃଦୟର ଚରମ ଓ ପରମ ଉତ୍କର୍ଷହିଁ ତାହାର ମାନବିକତାର ସର୍ବଶ୍ରେଷ୍ଠ

ଆଦର୍ଶ । ସୁତରାଂ ସେହି ହୃଦୟନିହିତ ବୃତ୍ତିଗୁଡ଼ିକର ସମ୍ୟକ୍ ଅନୁଶୀଳନହିଁ ତାହାର ଜୀବନର ମୁଖ୍ୟ ଉଦ୍ଦେଶ୍ୟ; ତେଣୁ ତାହାର ଦୈହିକ ଓ ମାନସିକ ଉନ୍ନତି ମଧ୍ୟ ସେହି ହୃଦୟର ଅର୍ଥାତ୍ ଆତ୍ମାର ପରିପୋଷକରୂପେ ସର୍ବଦା ବାଞ୍ଛନୀୟ । କିନ୍ତୁ ତାହା ମୁଖ୍ୟ ନୁହେଁ, କେବଳ ଗୌଣ । ଅର୍ଥାତ୍ ଆତ୍ମୋନ୍ନତିର ବା ହୃଦୟୋତ୍କର୍ଷ ବିଧାନର ଗୋଟିଏ ଗୋଟିଏ ସୋପାନ ମାତ୍ର । "ଶରୀରମାଦ୍ୟଂ ଖଳୁ ଧର୍ମ ସାଧନଂ" । ଧର୍ମସାଧନକୁ ମୁଖ୍ୟ କରି ଶାରୀରିକୋତ୍କର୍ଷକୁ ତାହାର ପ୍ରଧାନ ସହାୟ ବୋଲି ବିବେଚନା କରିବାହିଁ ଶ୍ରେୟସ୍କର । କେବଳ ଶରୀରରକ୍ଷାହିଁ କୌଣସି ବିବେକୀ ଲୋକର ଜୀବନର ଆଦର୍ଶ ହେବା ବାଞ୍ଛନୀୟ ନୁହେଁ । ସେହିପରି ହୃଦୟହୀନ ନୃଶଂସ ସ୍ୱାର୍ଥପର ଦୟା-ଦାକ୍ଷିଣ୍ୟ-ସମବେଦନାଦି କୋମଳ-ବୃତ୍ତିବର୍ଜିତ ମନୁଷ୍ୟ ପ୍ରଗାଢ଼ ବିଦ୍ୟାବୁଦ୍ଧିବଳରେ ଓ ଅସାଧାରଣ ମନୀଷାର ସାହାଯ୍ୟରେ ନରପିଶାଚ ମଧ୍ୟ ହୋଇ ପାରେ ଏବଂ ତାହାର ଅଲୌକିକ ବୁଦ୍ଧିବିଦ୍ୟା ତାହାକୁ ଅତି ମାତ୍ରାରେ ଦୁର୍ଦ୍ଧର୍ଷ ଓ ଅଜେୟ କରି ଦିଏ ବୋଲି ସେ ଦେଶର ମହାଶତ୍ରୁ ରୂପରେ ମାନବସମାଜର ନାନା ଉତ୍ପୀଡ଼ନ ସାଧନ କରେ । ସୁତରାଂ ହୃଦୟବତ୍ତାହିଁ ମନୁଷ୍ୟତ୍ୱର ଏକମାତ୍ର ପରିଚାୟକ । ତେଣୁ ଭଲ ଲୋକ କହିଲେ ଆମ୍ଭେମାନେ ସଚରାଚର ତାହାର ଶାରୀରିକ ଓ ମାନସିକ ଉନ୍ନତି ପ୍ରତି ଭ୍ରୂକ୍ଷେପ ନ କରି କେବଳ ତାହାର ଆତ୍ମାର ଅର୍ଥାତ୍ ହୃଦୟର ବୃତ୍ତି ଆଡ଼କୁ ଦୃଷ୍ଟି ନିକ୍ଷେପ କରିଥାଉଁ । ମହାତ୍ମା ଗାନ୍ଧିଙ୍କୁ ଆମ୍ଭେମାନେ ସେଥିପାଇଁ ମହାତ୍ମା ଡାକୁଥାଉଁ—ତାହାଙ୍କର ବିଶାଳ ହୃଦୟବତ୍ତାକୁ ଲକ୍ଷ୍ୟ କରି । ତାଙ୍କର ଶାରୀରିକ ସୌନ୍ଦର୍ଯ୍ୟ ଖୁବ ଉଚ୍ଚ କୋଟିର ନ ଥିଲା, କି ତାଙ୍କର ମାନସିକ ଉତ୍କର୍ଷରେ ମଧ୍ୟ ସସାଗରା ଧରିତ୍ରୀକୁ ମୁଗ୍ଧ କରିବାଭଳି ବିଶେଷ କିଛି ନ ଥିଲା । କିନ୍ତୁ ତାହାଙ୍କର ବିଶାଳ ହୃଦୟବତ୍ତାର ପଟାନ୍ତର କାହିଁ ? ସେହି ବିଶାଳ ହୃଦୟକୁ ଦେଖି ତାଙ୍କୁ ଲୋକେ ମହାତ୍ମା ଆଖ୍ୟା ଦେଲେ । ସେହିପରି ଶ୍ରୀ ରାମକୃଷ୍ଣ ପରମହଂସ ଦେବ ଓ ଶ୍ରୀ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ମହୋଦୟଙ୍କର ଜୀବନୀ ପାଠ କଲେ ମନୁଷ୍ୟର ହୃଦୟ ଯେ କେତେହେ

ଉଦାର ଓ ବିଶାଳ ହୋଇ ପାରେ ତାହା ଜଣାଯାଏ । ବିଶ୍ୱପ୍ରେମିକତାହିଁ ବିଶାଳ ହୃଦୟବୃତ୍ତିର ନାମାନ୍ତର ମାତ୍ର ।

ଏଥିରୁ ଏହାହିଁ ଅବଧାର୍ଯ୍ୟ ହେଉଅଛି ଯେ, ମନୁଷ୍ୟର ଶିକ୍ଷାଦୀକ୍ଷା, ଜ୍ଞାନବିଜ୍ଞାନ, ସାହିତ୍ୟ, ଧର୍ମ, କଳା ପ୍ରଭୃତି ସମସ୍ତେହିଁ ଯୁଗପତ୍ ସେହି ଆତ୍ମୋନ୍ନତି ବା ହୃଦୟବୃତ୍ତିର ସର୍ବାଙ୍ଗୀନ ଅନୁଶୀଳନ ଓ ଉତ୍କର୍ଷ ପାଇଁ ନିୟୋଜିତ । ମନୁଷ୍ୟ ଏହାକୁହିଁ ଲକ୍ଷ୍ୟ କରି ତାହାର ସମଗ୍ର ଜୀବନକୁ ନିୟନ୍ତ୍ରିତ ଓ ନିୟୋଜିତ କରିଥାଏ ଓ କରିବାହିଁ ତାହାର ଜୀବନର ଏକମାତ୍ର କର୍ତ୍ତବ୍ୟ । ତେବେ ଆଦର୍ଶକୁ ଭୁଲି କେହି କେହି ଯେ ଲକ୍ଷ୍ୟଭ୍ରଷ୍ଟ ହୁଅନ୍ତି ନାହିଁ ଏ କଥା କହୁ ନାହିଁ । କେହି କେହି ବହୁ ଦୂରରେ ଅବସ୍ଥିତ ସେହି ଚରମ ଓ ପରମ ଲକ୍ଷ୍ୟକୁ ଭୁଲି ଗନ୍ତବ୍ୟ ପଥରେ ଯାଉଁ ଯାଉଁ ଗୌଣକୁ ମୁଖ୍ୟ ବୋଲି ମନେ କରିଥାନ୍ତି ମାତ୍ର । ଶାରୀରିକ ଉନ୍ନତି ଓ ମାନସିକ ଉତ୍କର୍ଷ ସେହି ଆତ୍ମୋନ୍ନତିର ସୋପାନ ହେଲେହେଁ କେହି କେହି ଦୂର ଲକ୍ଷ୍ୟକୁ ଆପାତତଃ ଭୁଲିଯାଇ "ଶରୀର-ମାଦ୍ୟଂ" କହି କେବଳ ଶରୀରରକ୍ଷାକୁ ଜୀବନର ଏକମାତ୍ର ଲକ୍ଷ୍ୟ ବୋଲି ଧରି ବସନ୍ତି ଓ କେହି କେହି "ଜ୍ଞାନାତ୍ ପରତରଂ ନହି"ର ଦୁହାଇ ଦେଇ କେବଳହିଁ ଜ୍ଞାନାର୍ଜ୍ଜନକୁ ଜୀବନର ଅନ୍ତିମ ନିୟୋଗ ମନେ କରି ଜୀବନକୁ ନୀରସ, ଶୁଷ୍କ ଓ ପଙ୍ଗୁ କରିବାର ଚେଷ୍ଟା କରନ୍ତି । ଏଠାରେ କେବଳ ଶୁଷ୍କ ଜ୍ଞାନାର୍ଜ୍ଜନର କଥାହିଁ କହୁଛି । ଅନେକ ସ୍ଥାନରେ ଜ୍ଞାନାର୍ଜ୍ଜନ ବା ବିଦ୍ୟାନୁଶୀଳନରେ ମଧ୍ୟ ହୃଦୟବୃତ୍ତିର ଅନୁ-ଶୀଳନ ଯୁଗପତ୍ ହୋଇ ପାରେ—ସେଠାରେ ମନ ଓ ହୃଦୟ ଏବଂ ବୁଦ୍ଧି, ବିବେକ ଓ ଆତ୍ମାର ସମକାଳୀନ କର୍ଷଣ ସମ୍ଭବପର ହୁଏ । ସେପରି ସତ୍ ଶାସ୍ତ୍ରଚର୍ଚ୍ଚା କିନ୍ତୁ ଖୁବ୍ ବିରଳ । ଯେଉଁ ଜ୍ଞାନଚର୍ଚ୍ଚା କେବଳ ମନୋରାଜ୍ୟର ସଙ୍କୀର୍ଣ୍ଣ ଭୂମିକାରେ ପ୍ରତିଷ୍ଠିତ ହୋଇ ହୃଦୟକୁ ସ୍ପର୍ଶ କରେ ନାହିଁ, ସେହି ଶୁଷ୍କ ଜ୍ଞାନଚର୍ଚ୍ଚା କେଡ଼େ ନୀରସ, ତାହାହିଁ ଭାବିବାର କଥା । ତାହା ଜୀବନକୁ ପଙ୍ଗୁ କରିଦିଏ ଓ ହୃଦୟବୃତ୍ତିଗୁଡ଼ିକୁ ମଧ୍ୟ ନୀରସ କରେ ।

ତେଣୁ ଏହାହିଁ ସ୍ଥିର ହେଲା ଯେ, ଜୀବନର ସାର୍ବଭୌମ ଉନ୍ନତି କେବଳ ହୃଦୟ ବା ଆତ୍ମାର ଅନୁଶୀଳନଦ୍ୱାରାହିଁ ସମ୍ଭବ । ହୃଦୟର ଉନ୍ନତି ବା ଅନୁଶୀଳନର ପନ୍ଥା କଅଣ, ଭାବି ଦେଖିବାର କଥା । ପ୍ରଥମେ ଦେଖାଯାଉ ଜଡ଼ବିଜ୍ଞାନ । ଭୂତାବିଷ୍ଟ ସଭ୍ୟତାର ମାନଦଣ୍ଡ ଜଡ଼ବିଜ୍ଞାନର ଉତ୍କର୍ଷ । ପଦାର୍ଥ ବିଜ୍ଞାନ, ରସାୟନ ବିଦ୍ୟା, ଭେଷଜ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ ପ୍ରଭୃତି ସହସ୍ର ରୂପ ଧାରଣ କରି ଅଜସ୍ର ଜ୍ଞାନର ପ୍ରବାହ ଛୁଟି ଚାଲିଛି । ଆଧୁନିକ ସଭ୍ୟତା ସେହି ସବୁ ଜ୍ଞାନାଲୋକରେ ଉଦ୍ଭାସିତ ହୋଇ ବିସ୍ମୟ ଉତ୍ପାଦନ କରୁଛି । ମନୁଷ୍ୟର ଭୌତିକ ଜୀବନ ଆଜି ସେ ସବୁ ଦ୍ୱାରା ପରିଚାଳିତ ହୋଇ ନିତ୍ୟ ନବନବାୟମାନ ଦିଶୁଛି । ମନୁଷ୍ୟ ଧରିତ୍ରୀ ସବୁ ଜୟ କରି ଶିଖିଲାଣି—ତାର ଗୋଡ଼ ଆଉ ତଳେ ଲାଗୁ ନାହିଁ । ପ୍ରକୃତିରାଣୀର ଗନ୍ତାଘର ଆଜି ଅର୍ଦ୍ଧମୁକୁଳା—ତାର ରହସ୍ୟ-ରାଶି ଉଦ୍‌ଘାଟନ କରି ମନୁଷ୍ୟ ଇନ୍ଦ୍ରଜାଲ ସୃଷ୍ଟି କରି ପାରୁଛି । ଦେଶ ଓ କାଳ ଆଜି ମାନବର ମନୀଷା ସମ୍ମୁଖରେ ନତମସ୍ତକ ହେବାକୁ ବସିଲାଣି । ମନୁଷ୍ୟ ଆଜି ଛପନ ଗଣ୍ଡା ଯୁଗକୁ ବର ମାଗି ସ୍ୱର୍ଗ ମର୍ତ୍ତ୍ୟ ପାତାଳର ରାଜସିଂହାସନ ଦଖଲ କରିବାକୁ ବସିଲାଣି ଓ ହିରଣ୍ୟକଶିପୁ ପରି ମୃତ୍ୟୁର ନବଦ୍ୱାର ରୁଦ୍ଧ କରି ଛଳେ ବଳେ କୌଶଳରେ ଅମର ହେବାର ଦୁରାକାଂକ୍ଷା ମଧ୍ୟ ପୋଷଣ କରିବାକୁ କୁଣ୍ଠିତ ନୁହେଁ । ଏପରି ନାନା ଦିଗରେ ଜଡ଼ବିଜ୍ଞାନର କୃତିତ୍ୱ ଲକ୍ଷ୍ୟ କରି ପଞ୍ଚଭୌତିକ ଦେହଧାରୀ ମନୁଷ୍ୟ ଆଜି ଏକାବେଳକେ ଭୂତାବିଷ୍ଟ ହୋଇ ପଡ଼ିଛି । ଭୂତାବିଷ୍ଟ ହୋଇ ଯଦି ୧୦ ବର୍ଷର ଓଡ଼ିଆ ଝିଅ ଅନର୍ଗଳ ହିନ୍ଦୁସ୍ଥାନୀ କହି ପାରେ, "ଅସମ୍ଭବ ହେମମୃଗସ୍ୟ ଜନ୍ମ" ଜାଣି ଶୁଣି ଯଦି ସ୍ୱୟଂ ରାମଚନ୍ଦ୍ର ମୃଗକୁ ଲୋଭ କରି ତା ପଛରେ ଦଉଡ଼ନ୍ତି, ତେବେ ପାଞ୍ଚୁଟା ଭୂତଙ୍କ ହାବୁଡ଼ରେ ପଡ଼ି ତୁମ ଆମ ଭଳିଆ ରକ୍ତମାଂସ ଦେହଧାରୀ ମନୁଷ୍ୟଗୁଡ଼ାକ ଯେ ନିଶିଦିନ ହିରଣ୍ମୟ ସ୍ୱପ୍ନ ଦେଖିବେ ଓ କେବଳ ଇହଜଗତର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ଭୋଗବିଳାସର ପରିଣତିକୁ ଜୀବନର ଏକମାତ୍ର ଲକ୍ଷ୍ୟ ବୋଲି ଧରିନେବେ, ଏଥିରେ ବୈଚିତ୍ର୍ୟ କଅଣ ଅଛି ?

"ମହାଜନୋ ଯେନ ଗତଃ ସ ପନ୍ଥାଃ" ମହାଜନମାନଙ୍କର ପଦାଙ୍କ ଅନୁସରଣ ଛଡ଼ା ଇତର ଲୋକ ପକ୍ଷରେ ଅନ୍ୟ ଗତି ନାହିଁ । ସେ ତ ସ୍ୱାର୍ଥାନ୍ଧ, ସେ ତ ମୋହାନ୍ଧ, ସେ ତ ଅନ୍ଧାରଗଳିରେ, ନା ଭ୍ରମରେ ସେ ସବୁବେଳେ ବାଟବଣା— ତାକୁ ଫେରାଇ ଗୋଠକୁ ନେବାଲାଗି ଗୋପାଳଚୂଡ଼ାମଣିର ବଂଶୀଧ୍ୱନି ଦରକାର । ହଁ, ସେପରି ଜନଗଣ-ଅଧିନାୟକ ଶକ୍ତିଧର ଜନନେତା ଆସନ୍ତି । ବାଟ ଦେଖାଇ ଗନ୍ତବ୍ୟ ପଥରେ ଜନତାକୁ ନେଇ ଯାଆନ୍ତି । ଚରଲକ୍ଷ୍ୟଭ୍ରଷ୍ଟ ବାଟବଣା ଦଳ ଛଡ଼ା ଜନତା ତାଙ୍କର ବଂଶୀଧ୍ୱନି ଶୁଣି ଠିକ ଗନ୍ତବ୍ୟ ପଥରେ ଲକ୍ଷ୍ୟାଭିମୁଖରେ ଗତି କରେ । ସେପରି ସୁବିଧା ସୁଯୋଗ ସବୁବେଳେ ମିଳେ ନାହିଁ । ସେପରି କ୍ଷଣଜନ୍ମା ଅଧିନାୟକଙ୍କ ଅନ୍ତେ ତାଙ୍କର ଅନ୍ତେବାସୀମାନେ ତାଙ୍କର ଛାଡ଼ିଯିବା ମୁରଲୀଟି ବଜାଇବାର ଚେଷ୍ଟା କରନ୍ତି । କିନ୍ତୁ ଗୁରୁଜୀଙ୍କର ଷୋଳଅଣା କୃତିତ୍ୱ କି ଚେଲା ହାସଲ କରି ପାରେ ? ବଂଶୀ ବାଜେ ଠିକ୍ଷଣ ପାଇଁ, କିନ୍ତୁ ସେ ତାଳ, ମାନ, ଲୟ ଓ ମୂର୍ଚ୍ଛନା କାହିଁ ? ଆଜି ମହାତ୍ମାଜୀ ଅପ୍ରକଟ ହେଲେ; ତାଙ୍କର ଅତି ଅଙ୍ଗଲଗା ଅନ୍ତେବାସୀମାନେ କଅଣ ତାଙ୍କର ଜୀବନର ମହାଦର୍ଶକୁ ଅକ୍ଷୁଣ୍ଣ ରଖିବାର ଚେଷ୍ଟା କରି ଷୋଳପଣ କୃତିତ୍ୱ ଅର୍ଜନ କରିଛନ୍ତି ବୋଲି ଦାବି କରନ୍ତି ? ତାଙ୍କର ଆଦର୍ଶ କଅଣ ଆମ୍ଭେମାନେ ବୁଝିଲେଣି ? ତାଙ୍କର ସହକର୍ମୀ ମନୀଷୀମାନେ କଅଣ ତାହା ସମ୍ୟକ୍ ଉପଲବ୍ଧି କରିଛନ୍ତି ? କେତେ-ଗୁଡ଼ିଏ ଜନ୍ମାନ୍ଧ ବିଶାଳକାୟ ଐରାବତର ଅଙ୍ଗବିଶେଷରେ ହାତ ଦେଇ ତାକୁ କେହି ଲମ୍ବା, କେହି ଗୋଲ, କହିଲା ଭଳି ତାଙ୍କର ଅନ୍ତେବାସୀ-ମାନେ କଅଣ ଏକଦେଶଦର୍ଶୀ ହୋଇ ପଡ଼ି ନାହାନ୍ତି ?

ମହାତ୍ମାଜୀଙ୍କ ଆବିର୍ଭାବ ପୂର୍ବରୁ ଅବଦ୍ଧମାନକାଳରୁ ରାଜନୀତି ଗୋଟିଏ ସ୍ୱତନ୍ତ୍ର ଅନୁଶୀଳନରୂପରେ ଧର୍ମନୀତି, ସମାଜନୀତି, ଆଦର୍ଶବାଦ ପ୍ରଭୃତିଠାରୁ ଅଲଗା ହୋଇଥିଲା—ରାଜନୀତିର ଶମ, ଦମ ସଙ୍ଗେ ସଙ୍ଗେ ଭେଦ, ଶାଠ୍ୟ ପ୍ରଭୃତି ନାନା କୂଟନୀତି ମଧ୍ୟ ସ୍ଥଳବିଶେଷରେ ପ୍ରଯୁଜ୍ୟ ବୋଲି ଘୋଷିତ ହୋଇ ଆସୁଥିଲା । ମିଥ୍ୟା, ପ୍ରବଞ୍ଚନା, ଛଦ୍ମବେଶ ପ୍ରଭୃତି

ରାଜନୀତିବିଶାରଦ ମେଧାବୀ ମନୀଷୀମାନଙ୍କର ଦୈନନ୍ଦିନ ଜୀବନର ପରିମାପକ ଥିଲା । ଇଉରୋପର ମେକିଆ ଭେଲୀ—(Machiavelli) ଏବଂ ଭାରତର ଚାଣକ୍ୟ ଏ ଦିଗରେ ଯୁଗପ୍ରବର୍ତ୍ତକ ରାଜନୀତିଜ୍ଞ କହିଲେ ଚଳେ । ରାଜନୀତିରେ ଧର୍ମର ସ୍ଥାନ ନ ଥିଲା, ସତ୍ୟର ସ୍ଥାନ ମଧ୍ୟ ନ ଥିଲା । 'ମାରି ଅରି ପାରି ଯେ କୌଶଳେ' ଏହାହିଁ ରାଜନୀତିର ବୀଜମନ୍ତ୍ର ଥିଲା ।

କିନ୍ତୁ ମହାତ୍ମା ଜୀଙ୍କର ରାଜନୀତିର ଆଦର୍ଶ ହେଲା "ସତ୍ୟାଗ୍ରହ" । ଧର୍ମସ୍ୱରୂପୀ ସତ୍ୟରେ ତାଙ୍କର ଯେ କି ପ୍ରଗାଢ଼ ନିଷ୍ଠା ଥିଲା, ତାହା ତାଙ୍କର ଚେଲାମାନେ ଯେପରି ପ୍ରତ୍ୟକ୍ଷୀଭୂତ କରିଛନ୍ତି, ଆମ୍ଭେମାନେ ସେ ସୌଭାଗ୍ୟ ତ ପାଇ ନାହୁଁ । ସେ ଭାରତର ସନାତନ ଆଦର୍ଶକୁ ହୃଦୟଙ୍ଗମ କରିଥିଲେ ବୋଲି ରାଜନୀତିକୁ ଧର୍ମନୀତି ବା ସମାଜନୀତିଠାରୁ ସ୍ୱତନ୍ତ୍ର ବୋଲି କଳ୍ପନା କରି ପାରି ନ ଥିଲେ । ଏହାହିଁ ଭାରତର ପୁରାତନ ଆଦର୍ଶ ଅଟେ । ଆର୍ଯ୍ୟ ଭାରତର ଧର୍ମ ଆଦର୍ଶ ଖୁବ ବ୍ୟାପକ ଥିଲା । ବ୍ରାହ୍ମ ମୁହୂର୍ତ୍ତରେ ଗାତ୍ରୋତ୍ଥାନ କରି ଶଯ୍ୟାତ୍ୟାଗ କରିବାଠାରୁ ପୁଣି ଶଯ୍ୟାଗ୍ରହଣ କରିବା ପର୍ଯ୍ୟନ୍ତ ମନୁଷ୍ୟଜୀବନର ଦୈନନ୍ଦିନ ପ୍ରତ୍ୟେକ କାର୍ଯ୍ୟହିଁ ଧର୍ମର ଅଙ୍ଗୀଭୂତ ଥିଲା । ପ୍ରତ୍ୟହ ପ୍ରତ୍ୟୁଷରେ ଗୃହର ଅଗଣାରେ ଛେରାପହଁରାଠାରୁ ଆରମ୍ଭ କରି ସାମ୍ବତ୍ସରିକ ପୂଜାପାର୍ବଣର ମହାମହୋତ୍ସବ ସମସ୍ତହିଁ ଏହି ଧର୍ମର ଗୋଟିଏ ଗୋଟିଏ ଅଙ୍ଗ । ରାଜନୀତି ଏହି ବିଶାଳ ଧର୍ମଗ୍ରନ୍ଥର ଗୋଟିଏ ବିଶିଷ୍ଟ ଅଧ୍ୟାୟ । ସୁତରାଂ ରାଜନୀତି ଯେ ଧର୍ମର ତଥା ସତ୍ୟର ସାର୍ବ-ଭୌମ ଭୂମିକା ଉପରେ ପ୍ରତିଷ୍ଠିତ ଏହା ମହାତ୍ମାଜୀ ଉପଲବ୍ଧି କରିଥିଲେ । ସତ୍ୟାଗ୍ରହ ବ୍ୟତିରେକେ ରାଜନୀତି ତିଷ୍ଠି ପାରେ ନାହିଁ ବୋଲି ସେ ବୁଝି ପାରିଥିଲେ । ଧର୍ମଛଡ଼ା ହେଲେ କୌଣସି ଜାତି ଉନ୍ନତି କରି ପାରେ ନାହିଁ । "ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ" ଏକଥା ସେ ଶ୍ରୀମଦ୍ ଭଗବଦ୍‌ଗୀତାରୁ ଗ୍ରହଣ କରିଥିଲେ । ଭାରତର ସନାତନ ଧର୍ମାଦର୍ଶକୁ ଅକ୍ଷୁଣ୍ଣ ରଖି ସେ ସତ୍ୟାଗ୍ରହ ତଥା ଧର୍ମନିଷ୍ଠାର ଆଦର୍ଶ ପୁନଃସ୍ଥାପନ କରି ରାଜନୀତି ସଙ୍ଗରେ ଧର୍ମନୀତିର ସମନ୍ୱୟ କରିଦେଲେ । ତାଙ୍କର ଦୈନନ୍ଦିନ

ପ୍ରାର୍ଥନା, ରାମଧୂନ ଓ ଗୀତାପାଠରୁ ଏହା ସ୍ପଷ୍ଟ ଜଣାଯାଏ । ତାଙ୍କର ପ୍ରତ୍ୟେକ କାର୍ଯ୍ୟ ଧର୍ମନୀତି ଓ ସତ୍ୟାଗ୍ରହଦ୍ୱାରା ପରିଚାଳିତ ହୋଇ ଆସିଅଛି ଓ ତାଙ୍କର ଆକସ୍ମିକ ଅକାଳ ନିର୍ଯ୍ୟାଣ କାଳରେ ମଧ୍ୟ ରାମନାମ ଉଚ୍ଚାରଣ କରି ନଶ୍ୱର ନରଦେହ ପରିତ୍ୟାଗ କରି ଅମରପଦବୀରେ ପ୍ରତିଷ୍ଠିତ ହେଲେ । ଏ ଘଟଣାଟି ତାଙ୍କର ସାରା ଜୀବନର ସତ୍ୟନିଷ୍ଠା ଓ ଧର୍ମାନୁରାଗ ଉପରେ ଗୋଟିଏ ଅନୁମୋଦନମୁଦ୍ରା ମାରିଦେଲା ଭଳି ବୋଧ ହେଲା । "ଜୀବର ଭଲ ମନ୍ଦ ବାଣୀ, ମରିବାବେଳେ ତାହା ଜାଣି ।" ତାଙ୍କର ସମଗ୍ର ଜୀବନବ୍ୟାପୀ ଧର୍ମନିଷ୍ଠାର ଏହାଠାରୁ ବଳି ସମୀଚୀନ ଦୃଷ୍ଟାନ୍ତ ମିଳି ନ ପାରେ । ଏପରି ଧର୍ମପ୍ରାଣ କ୍ଷଣଜନ୍ମା ନରପୁଙ୍ଗବଙ୍କୁ ରାଜନୀତିକ୍ଷେତ୍ରରେ ଜନନାୟକରୂପେ ପାଇ ଭାରତ ନିଜେ ଧନ୍ୟ ହୋଇ ସମଗ୍ର ପୃଥିବୀକୁ ନବୀନ ରାଜନୀତି ଧର୍ମରେ ଦୀକ୍ଷିତ କରାଇ ଧନ୍ୟପଦାର୍ଥ କରି ଦେଇଅଛି ।

କିନ୍ତୁ ତାଙ୍କର ଅନୁଚରମାନେ ତାଙ୍କର ଆଦର୍ଶକୁ ବରଣ କରି ନେଇଥିଲେ ସୁଦ୍ଧା ତାଙ୍କର ମହା ଆଦର୍ଶର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିଛନ୍ତି କି ? ତାଙ୍କର ଆଦର୍ଶର ବିଶିଷ୍ଟତା ବା ନୂତନତ୍ୱ କେବଳ ତାଙ୍କର ଧର୍ମପ୍ରାଣତା ଓ ସତ୍ୟନିଷ୍ଠାରେ ପର୍ଯ୍ୟବସିତ । ସେହି ପ୍ରଗାଢ଼ ଧର୍ମାନୁରାଗକୁ ଏମାନେ ଗୌଣ ବା ଅଳୀକ ମନେ କରି ପରିତ୍ୟାଗ କରି ବସିଲେଣି । ରାମାୟଣ ଓ ଭଗବଦ୍‌ଗୀତା ପାଠ ନ କରି ସେ ଦୈନନ୍ଦିନ ଜୀବନରେ ହସ୍ତକ୍ଷେପ କରୁ ନ ଥିଲେ, ତାଙ୍କର ଅତି ଅନ୍ତରଙ୍ଗ ସେବକସଂଘ ଓ ତଦ୍‌ଗତପ୍ରାଣ ହୋଇ ସୁଦ୍ଧା ତାଙ୍କର ଆଦର୍ଶର ମର୍ଯ୍ୟାଦା ଲଙ୍ଘନ କରୁ ନାହାନ୍ତି କି ? ତାଙ୍କର ପ୍ରବର୍ତ୍ତିତ ନବ ରାଜନୀତି ଧର୍ମରେ ଦୀକ୍ଷିତ ତାଙ୍କର ଅନ୍ତେବାସୀମାନେ ତାଙ୍କର ଧର୍ମନିଷ୍ଠାର ପରିଚୟ ନ ଦେବାରୁ ମହାତ୍ମାଙ୍କ ଆଧ୍ୟାତ୍ମିକ ପ୍ରଭାବ ଜନତା ଉପରେ ପୂର୍ଣ୍ଣ ମାତ୍ରାରେ ପଡ଼ିବ କିପରି ? କେବଳ ସତ୍ୟାଗ୍ରହ ଓ ଅହିଂସାନୀତିର ମୌଖିକ ପ୍ରଚାର କଅଣ ଫଳବାନ୍ ହେବ ? ନିଜେ ଆଚରଣ କରି ଧର୍ମଶିକ୍ଷା ଦେବାହିଁ ଆର୍ଯ୍ୟ ଆଚାର୍ଯ୍ୟମାନଙ୍କର ସନାତନ ପନ୍ଥା । ଧର୍ମପ୍ରାଣ ଓ ଧର୍ମଭୀରୁ ଭାରତ ପକ୍ଷରେ ଏହାହିଁ ସମୀଚୀନ

ବ୍ୟବସ୍ଥା ଓ ପ୍ରକୃଷ୍ଟ ଉପାୟ ଜାଣି ସେ ସେହି ପଥର ପଥିକ ହୋଇ ଜନତାକୁ ଚାଳିତ କରୁଥିଲେ । ତାଙ୍କର କାର୍ଯ୍ୟାବଳୀରୁ ବେଶ ବୁଝାଯାଏ ସେ ସର୍ବତତ୍ତ୍ୱସମ୍ବଳିତ ଗୀତା ଓ ଲୀଳାରସାମୃତସିକ୍ତ ରାମାୟଣର ସମନ୍ୱୟରେ ଆର୍ଯ୍ୟଭାରତର ଧର୍ମଟିକୁ ଜନତାର ହୃଦୟକୁ ମନ୍ତ୍ରମୁଗ୍ଧ ପରି ବଶ କରି ପାରିବେ ଏବଂ ସେ ତାହାହିଁ କରିଥିଲେ ଏବଂ ଏମନ୍ତ କି ବିଶ୍ୱମାନବର ହୃଦୟବୀଣାତନ୍ତ୍ରୀରେ ମଧ୍ୟ ସେ ଝଙ୍କାର ଘନଘନ ଝଙ୍କୃତ ହୋଇ ଉଠିଥିଲା । କିନ୍ତୁ ତାଙ୍କର ସହଚର ଓ ଅନୁଚରବର୍ଗ ତାଙ୍କର ଆଦର୍ଶରେ କିୟଦଂଶ ମାତ୍ର ଗ୍ରହଣ କରି ସାରାଂଶ ବର୍ଜନ କରୁ ନାହାନ୍ତି କି ? ଏହିପରି ଅର୍ଦ୍ଧକୁକ୍କୁଟୀ ନ୍ୟାୟର ପକ୍ଷପାତୀ ହୋଇ ହାସ୍ୟାସ୍ପଦ ହେବେ ନାହିଁ କି ? ତାଙ୍କ ଆଦର୍ଶର ସାରାଂଶ ବର୍ଜନ କରି ଅସାରାଂଶ ଗ୍ରହଣ କଲେ ସାହେବ କଦଳୀ ଖାଇଲା ପରି ହେବ ଓ ମହାତ୍ମାଜୀଙ୍କର ସମନ୍ୱୟବାଦ ଖଣ୍ଡିତ ହେବ । ରାଜନୀତିକୁ ଧର୍ମନୀତିର ଅଙ୍ଗୀଭୂତ କରି ସେ ବିଶ୍ୱବରେଣ୍ୟ ରାଜନୀତିବିଶାରଦ ମହାମାନବରୂପରେ ସମସ୍ତ ପୃଥିବୀରେ ସମାଦୃତ ହେଉଥିବା ସ୍ଥଳରେ ତାଙ୍କର ବିଶାଳ ହୃଦୟବତ୍ତାକୁ ଅକ୍ଷୁଣ୍ଣ ରଖିବା ଆମ୍ଭମାନଙ୍କର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ।

କିନ୍ତୁ ତାହା ନ କରିବାରୁ ପୁଣି ତ ସେହି ଭୂତାଭିନିବେଶ ଲୀଳା ଆରମ୍ଭ ହେଲଣି । ରାଜନୀତିର କର୍ମକ୍ଷେତ୍ରରୁ ଧର୍ମକୁ ପୁଣି ନିର୍ବାସନର ଚେଷ୍ଟା ହେଲଣି । କେବଳ ଖାଦ୍ୟସଙ୍କଟ, ଖାଦ୍ୟ ଉତ୍ପାଦନ, ଜଡ଼ ବିଜ୍ଞାନର ଐକାନ୍ତିକ ଅନୁଶୀଳନ, ମନୋବିଜ୍ଞାନ ତଥା ଅଧ୍ୟାତ୍ମବିଜ୍ଞାନ ଏବଂ ଲଳିତ କଳା ପ୍ରତି ପୂର୍ଣ୍ଣ ଔଦାସୀନ୍ୟ ଏ ଯୁଗର ଲକ୍ଷଣ ହେଲଣି । ଏଠାରେ ଧର୍ମ ଅର୍ଥରେ ସାମ୍ପ୍ରଦାୟିକତା ( Sectarianism ) ବା ଧର୍ମର ଆଚାରବ୍ୟବହାର ( Religion ) ନୁହେଁ । "ଧରଂ ଧରେତ୍ତି ଧର୍ମଃ" ଯାହା ଜୀବନଧାରଣର ସର୍ବବିଧ ଅନୁଶୀଳନର ଧାରକ ସ୍ୱରୂପ । ଆତ୍ମୋନ୍ନତି ବା ହୃଦୟୋତ୍କର୍ଷହିଁ ତାହାର ବିଶେଷ ଲକ୍ଷ୍ୟ ବସ୍ତୁ । କେବଳ ଶାରୀରିକ ଓ କେବଳ ମାନସିକ ଅନୁଶୀଳନ ( Physical Culture and Intellectual Culture ) ଦ୍ୱାରା କି ବ୍ୟକ୍ତିଗତ କି

ଜାତିଗତ କୌଣସି ଉନ୍ନତି ସାଧିତ ହୋଇ ନ ପାରେ । ମୁଁ ଏଠାରେ ରାଜନୀତି କ୍ଷେତ୍ରର କୌଣସି ଯୋଜନାକୁ ଖର୍ବ କରିବାର ଚେଷ୍ଟା କରୁ ନାହିଁ—ମୋହର ଏତିକି ବକ୍ତବ୍ୟ ଯେ, ଜୀବନର ମହାଲକ୍ଷ୍ୟକୁ ଭୁଲି ଅପାରମାର୍ଥିକ ଐହିକ ଭୋଗଲାଳସାକୁ ଜୀବନର ଚରମୋତ୍କର୍ଷ ବୋଲି ଜାତିସମକ୍ଷରେ, ବିଶେଷତଃ ମୋହାନ୍ଧ ଜନତା ସମକ୍ଷରେ ଉପସ୍ଥାପିତ କରିବା ସମୀଚୀନ ନୁହେ । ବରଂ ଏ ଯୁଗର ମହା-ମାନବଙ୍କର ଆଦର୍ଶ ଅନୁସରଣ କରି ଆମ୍ଭମାନଙ୍କର ହୃଦୟଙ୍ଗମ କରିବା ଉଚିତ ।

ମହାମାନବ ମହାତ୍ମାଜୀଙ୍କ ପବିତ୍ର ପଦାଙ୍କ ଅନୁସରଣ କରି ହୃଦୟ-ବୃତ୍ତିଗୁଡ଼ିକର ସମ୍ୟକ୍ ଅନୁଶୀଳନ କରିବାକୁ ଧର୍ମ ବୋଲି, ସତ୍ୟାଗ୍ରହ ବୋଲି ବା ଆତ୍ମୋତ୍କର୍ଷ ବୋଲି ଜୀବନର ମହାଲକ୍ଷ୍ୟ ବୋଲି ଅବଧାରଣ-କରି ଜୀବନକୁ ନିୟନ୍ତ୍ରିତ କରିବାକୁ ହେବ । ଉଦରପୂର୍ତ୍ତି ଗୋଟିଏ ପ୍ରଧାନ ସମସ୍ୟା ହେଲେ ମଧ୍ୟ ତାହା ଯେ ମୁଖ୍ୟ ନୁହେ—ଗୌଣ, ତାହା ମନେ ରଖିବାକୁ ହେବ ।

ସେହିପରି କେବଳ ଶୁଷ୍କ ଜ୍ଞାନାର୍ଜନକୁ ମଧ୍ୟ ଜୀବନର ମୁଖ୍ୟ ଲକ୍ଷ୍ୟ ମନେ ନ କରି ଆତ୍ମୋନ୍ନତିର ଗୋଟିଏ ଅପରିହାର୍ଯ୍ୟ ସୋପାନ ବୋଲି ସ୍ୱୀକାର କରିବା ଉଚିତ । ଜଡ଼ବିଜ୍ଞାନର ଅନୁଶୀଳନ ଓ ଅପରା ବିଦ୍ୟାର ଚର୍ଚ୍ଚାର ସ୍ଥାନ ଜୀବନଯାତ୍ରା ପଥରେ ଖୁବ ଉଚ୍ଚ ହେଲେ ମଧ୍ୟ ଉଚ୍ଚତମ ନୁହେ । ଏହା ସର୍ବଦା ସ୍ମରଣ ରଖି ଜୀବନକୁ ପରିଚାଳିତ କରିବାକୁ ହେବ ।

ଅପରା ବିଦ୍ୟାରୁ ପରା ବିଦ୍ୟା ଓ ତହିଁରୁ ଆତ୍ମୋତ୍କର୍ଷ ସାଧିତ ହୋଇ ପାରେ ସତ୍ୟ, ସ୍ଥଳବିଶେଷରେ ଶୁଷ୍କ ଜଡ଼ବିଜ୍ଞାନର ଅନୁଶୀଳନ ହୃଦୟର ନୀରସତାବିଧାୟକ ହୁଏ । ଏମନ୍ତ କି ଗଣିତର ସିଦ୍ଧାନ୍ତ ସମ୍ବଳିତ ତତ୍ତ୍ୱ ପୁସ୍ତକ ମଧ୍ୟ ଭଳି ନୀରସ ହେବାରୁ ହୃଦୟକୁ ସ୍ପର୍ଶ କରେ ନାହିଁ । ଦାର୍ଶନିକ ଗବେଷଣାପୂର୍ଣ୍ଣ ମନୋରଞ୍ଜନ ମଧ୍ୟ କେବଳ ମନୋରାଜ୍ୟର ସଙ୍କୀର୍ଣ୍ଣ ସୀମା

ମଧ୍ୟରେ ବହୁ ଅନ୍ତରସ୍ପର୍ଶୀରୁ ଉତ୍ଥିତ ହୁଏ ନା । ସରସତାର ଅଭାବରୁ ହୃଦୟଗ୍ରାହୀ ନ ହେବାରୁ ଜୀବନ ଉପରେ ତାହାର ପ୍ରଭାବ ଖୁବ କମ ।

ଗୋଟାଏ ଦୃଷ୍ଟାନ୍ତରୁ ଦେଖାଯାଉ ଏହା କେତେ ଦୂର ସତ୍ୟ । ଯେଉଁ ପରୀକ୍ଷାର୍ଥୀ "ସାଧୁତାହିଁ ସର୍ବଶ୍ରେଷ୍ଠ ଉପାୟ" ଏହି ବିଷୟରେ ଗୋଟିଏ ଦୀର୍ଘ ପ୍ରବନ୍ଧ ରଚନା କରି ସାଧୁତାର ସମର୍ଥନରେ ନାନା ଯୁକ୍ତି ବାଢ଼ିଅଛି, ସେହି ପୁଣି ତନ୍ନ ତନ୍ନ କରି ସହପାଠୀଠାରୁ ଅବୈଧ ସାହାଯ୍ୟର ଲୋଭ ସମ୍ବରଣ ନ କରି ପାରିବାରୁ ପରିଦର୍ଶକର ଚକ୍ଷୁଃଶୂଳ ହେଉଛି । ସେ ଖୁବ ଭଲ କରି ଜାଣେ ଯେ, ବସ୍ତୁତଃ ଅସାଧୁ ଉପାୟ ଅବଲମ୍ବନ କରିବା ବଡ଼ ଲଜ୍ଜାର କଥା; କିନ୍ତୁ ହୃଦୟଦୌର୍ବଲ୍ୟ ବଶତଃ ପ୍ରଲୋଭନରେ ପଡ଼ି ଅସାଧୁ ଉପାୟ ଅବଲମ୍ବନରୁ କୁଣ୍ଠିତ ହେଉ ନାହିଁ । ଅମ୍ଭେମାନେ ସମସ୍ତେ ଜାଣୁ, ଚୋରି କରିବା ଭଲ ନୁହେଁ, ମିଥ୍ୟା କହିବା ମହାପାପ ଓ "ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍ ପରଦାରେଷୁ ମାତୃବତ୍" ଜ୍ଞାନ କରିବା ଉଚିତ ଓ କାମ କ୍ରୋଧ ପ୍ରଭୃତିର ବଶବର୍ତ୍ତୀ ନ ହେବା ଉଚିତ—ଇତ୍ୟାଦି ଇତ୍ୟାଦି ନାନା ହିତୋପଦେଶରେ ଆମ୍ଭମାନଙ୍କର ଟିକେ ହେଲେ ସନ୍ଦେହ ବା ଦ୍ୱିଧାଭାବ ନାହିଁ । ଗୀତା ଓ ଭାଗବତରେ ଆମ୍ଭମାନଙ୍କର ଅଚଳ ଭକ୍ତି ଅଛି; ସୁତରାଂ ଗୀତାଭାଗବତୋକ୍ତ ହିତବାଣୀ ସବୁ ଆମ୍ଭମାନଙ୍କର ଶିରୋଧାର୍ଯ୍ୟ । କିନ୍ତୁ ସେହି ସେହି ମହାବାକ୍ୟ ଓ ଋଷିମୁଖନିଃସୃତ ହିତୋପଦେଶ ମଧ୍ୟରୁ କେତୋଟି ଅମ୍ଭେମାନେ ନିଜ ଜୀବନରେ ପାଳନ କରିବାକୁ କ୍ଷମ ହୋଇଥାଉଁ ? ବାସ୍ତବ ଜୀବନ ଉପରେ ସେମାନଙ୍କର ପ୍ରଭାବ ଖୁବ କମ ! କେବଳ ବଚନବିନ୍ୟାସରେ, ବାଗ୍‌ବିତଣ୍ଡାରେ ସେମାନେ ପ୍ରକଟ ହୁଅନ୍ତି ମାତ୍ର, କିନ୍ତୁ ବାସ୍ତବ ଜୀବନର କର୍ମକ୍ଷେତ୍ରରେ ସେମାନଙ୍କର ବହୁଳ ପ୍ରୟୋଗ ଖୁବ ବିରଳ । ନୀତିବାକ୍ୟ କେବଳ ମନୋରାଜ୍ୟର ସଙ୍କୀର୍ଣ୍ଣ ଗଣ୍ଡି ମଧ୍ୟରେ ଜ୍ଞାନବତ୍ତାର ପରିମାପକ ହୋଇଥାଏ ମାତ୍ର ।

ହୃଦୟ ଉପରେ ତାହାର ପ୍ରଭାବ ଖୁବ କମ୍—ତାହାର କାରଣ କଅଣ ? କୂଟତର୍କବାଦୀମାନେ ପୂର୍ବପକ୍ଷ କରି କହିଲେ କହି ପାରନ୍ତି— ସେମାନଙ୍କର ତତ୍ତ୍ୱବିଷୟକ ଜ୍ଞାନ ପୂର୍ଣ୍ଣ ନୁହେ, ପରିପକ୍ୱ ନୁହେ—ତାହା

ସନ୍ଦେହଯୁକ୍ତ ଓ ଦୁର୍ବଳ ଥିବାରୁ ତାହାର ପ୍ରଭାବ ମନୁଷ୍ୟର ବାସ୍ତବ ଜୀବନ ଉପରେ ଖୁବ କ୍ଷୀଣ ହେବାରୁ ମନୁଷ୍ୟ ଭ୍ରାନ୍ତ ପଥରେ ଧାବିତ ହୋଇ ପ୍ରଲୋଭନରେ ପଡ଼େ । ତତ୍ତ୍ୱତ୍ ହିତୋପଦେଶ ଗୁଡ଼ିକରେ ତାହାର ସମ୍ପୂର୍ଣ୍ଣ ବିଶ୍ୱାସ ନାହିଁ, ସେଗୁଡ଼ିକର ଉପାଦେୟତାରେ ତାହାର ସମ୍ପୂର୍ଣ୍ଣ ଆସ୍ଥା ନାହିଁ, କେବଳ ଜ୍ଞାନ ଗର୍ବରେ ମୁଖରେ ଉଚ୍ଚାରଣ କରେ ମାତ୍ର । ଏହା ସବୁ କ୍ଷେତ୍ରରେ ପ୍ରଯୁଜ୍ୟ ନୁହେ, କାରଣ ଅନେକ ସ୍ଥଳରେ ଲୋକ ପ୍ରଲୋଭନରେ ପଡ଼ି ବିବେକବାଣୀ ପ୍ରତି ବଧିର ହୋଇ ତତ୍କାଳୀନ ଉନ୍ମାଦନାର ବଶବର୍ତ୍ତୀ ହୋଇପଡ଼େ ଏବଂ ଅକର୍ମ, କୁକର୍ମ ମଧ୍ୟ କରି ପକାଏ । ପରେ ଉନ୍ମାଦନାର ତିରୋଧାନ ସଙ୍ଗେ ସଙ୍ଗେ ଅନୁତପ୍ତ ହୋଇପଡ଼େ । ଏପରି କ୍ଷେତ୍ରରେ ପ୍ରଲୋଭନରେ ପଡ଼ିବାର କାରଣ ହିତୋପଦେଶରେ ବିଶ୍ୱାସର ଅଭାବ ବା କ୍ଷୀଣତା ବୋଲି ମନେ ନ କରି ତାହାର ହୃଦୟର ସ୍ୱଭାବସିଦ୍ଧ ଦୌର୍ବଲ୍ୟହିଁ ବୁଝିବା ସମୀଚୀନ ନୁହେଁ କି ?

ମୁଁ ଏଠାରେ ଗୋଟାଏ କଥା କହି ରଖିବାକୁ ଚାହେଁ । ମୁଁ ହୃଦୟ ଓ ମନ ମଧ୍ୟରେ ଯେଉଁ ମନସ୍ତତ୍ତ୍ୱସମ୍ମତ ପାର୍ଥକ୍ୟ ଉପରେ ଖୁବ୍ ଜୋର ଦେଉଛି, ସେଟା ସର୍ବବାଦୀସମ୍ମତ, ସର୍ବ ମନସ୍ତତ୍ତ୍ୱବିଦଙ୍କ ଅନୁମୋଦିତ ଭାଷାଗତ ପାର୍ଥକ୍ୟ ନ ହୋଇ ପାରେ । ଇଂରାଜୀରେ ତାହା କିନ୍ତୁ ସୁସ୍ପଷ୍ଟ ଓ ପ୍ରାଞ୍ଜଳ । ମନ (Intellect), ହୃଦୟ (Heart) ମାନସିକ (Intellectual), ଏବଂ ନୈତିକ (Moral) ଓ ଆଧ୍ୟାତ୍ମିକ (Spiritual) ହୃଦୟର ଆଧ୍ୟାତ୍ମିକ ଓ ନୈତିକ ବୃତ୍ତି ମାନସିକ (Intellectual) ବୃତ୍ତିଠାରୁ ପୃଥକ୍ ।

ଅସ୍ମମାନଙ୍କର ପରିଭାଷା ନ ଥିବାରୁ ବା ମୋତେ ଜଣା ନ ଥିବାରୁ ମୁଁ ମନ, ମାନସ ବା ବୋଧଶକ୍ତିକୁ intellect ଏବଂ ହୃଦୟବୃତ୍ତିକୁ ନୈତିକ ଓ ଆଧ୍ୟାତ୍ମିକ (moral and spiritual) ଅର୍ଥରେ ଗ୍ରହଣ କଲି । ଶବ୍ଦର ଅର୍ଥ ଉପରେ ଜୋର ନ ଦେଇ ତାହାର ଭାବ ଗ୍ରହଣ କଲେହିଁ ହେଲା । କେବଳ ଜାଣିଲେହିଁ ହେବ ନାହିଁ, ସେହି ଜ୍ଞାନ ଯେପର୍ଯ୍ୟନ୍ତ

ହୃଦୟକୁ ସ୍ପର୍ଶ ନ କରିଛି, ସେ ଜ୍ଞାନର ପ୍ରଭାବ ଜୀବନ ଉପରେ କମ । ମୋର କହିବାର କଥା—ଆମ୍ଭେମାନେ ଜାଣି ଶୁଣି କୁପଥ ଅବଲମ୍ବନ କରି ପ୍ରଲୋଭନର ବଶବର୍ତ୍ତୀ ହୋଇ ଅଧର୍ମ କୁକର୍ମ କରୁଁ—ତାହା କେବଳ ଆମ୍ଭମାନଙ୍କର ହୃଦୟଦୌର୍ବଲ୍ୟ ବଶତଃ ସମ୍ଭବପର ହୁଏ—ଆମ୍ଭର ଅକାଟ୍ୟ ଯୁକ୍ତି, ଗଭୀର ଜ୍ଞାନ ଓ ପୁଷ୍ଟ ବିଶ୍ୱାସ ସତ୍ତ୍ୱେ ହୃଦୟ ବିଦ୍ରୋହୀ ହୋଇ ଉଠେ ଓ ଷଡ଼ରିପୁର ପ୍ରରୋଚନାରେ ପଡ଼ି ଯୁକ୍ତି, ତର୍କ, ବିଶ୍ୱାସସମ୍ବଳିତ ହିତୋପଦେଶକୁ ପଦଦଳିତ କରିଦିଏ । ଆମ୍ଭେମାନେ ସେହି ଆପାତମଧୁର ପ୍ରଲୋଭନରେ ମଗ୍ନ ହେଉଁ ଓ ନିଜ ଅପରିଣାମଦର୍ଶିତାର ଫଳ ଭୋଗ କରି ପରେ ବିଶେଷ ଅନୁତପ୍ତ ମଧ୍ୟ ହେଉଁ । କିନ୍ତୁ ଷଡ଼ରିପୁ ମଧ୍ୟରୁ କାହାରି କବଳରେ ପଡ଼ିଲେ ମନୁଷ୍ୟର ସମସ୍ତ ବୁଦ୍ଧି, ବିବେକ, ଜ୍ଞାନ, ମେଧାଶକ୍ତି ଓ ମନୀଷା ହଜିଯାଏ —ସେ ପଶୁଠାରୁ ହୀନ ହୋଇ ଅଗମ୍ୟାଗମନ ପର୍ଯ୍ୟନ୍ତ କରି ପକାଇ ଘୋର ଅନୁତାପରେ କେହି ବା ପାଗଳ ହୋଇଯାଏ ଓ କେହି ବା ଆତ୍ମହତ୍ୟା କରି ଅନୁତାପବହ୍ନି କବଳରୁ ରକ୍ଷା ପାଏ । ପୂର୍ବ ଭାରତବର୍ଷର ପୁରାଣପ୍ରସିଦ୍ଧ ତ୍ରିକାଳଦର୍ଶୀ ମୁନିଋଷିମାନେ ସେହି ହୃଦୟ-ଦୌର୍ବଲ୍ୟର କାରଣ ନିର୍ଦ୍ଦେଶ କରିବାକୁ ଯାଇ କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟରୂପୀ ଷଡ଼ରିପୁର ସନ୍ଧାନ ଦେଇଅଛନ୍ତି । ମନୁଷ୍ୟ ହୃଦୟର ନିଖିଳ ବୃତ୍ତି ଏହି ଛଅଟି ଶ୍ରେଣୀରେ ନିବଦ୍ଧ ବୋଲି ସେମାନେ ସ୍ଥିର କରିଅଛନ୍ତି ।

କିନ୍ତୁ ଜଡ଼ବିଜ୍ଞାନ ତ କେବଳ ଭୌତିକ ଜୀବନର ପୋଷକ ଛଡ଼ା ଅନ୍ୟ କିଛି ହବ ପାରେ ନା । ସେହିପରି ମନୋବିଜ୍ଞାନ ମଧ୍ୟ କେବଳ ମନସ୍ତତ୍ତ୍ୱ ନେଇ ବ୍ୟସ୍ତ । ମନୋରାଜ୍ୟର ସଙ୍କୀର୍ଣ୍ଣତାକୁ ଅତିକ୍ରମ କରିବାର ଚେଷ୍ଟା ନାହିଁ । ଏମନ୍ତ କି ଅଧ୍ୟାତ୍ମବିଜ୍ଞାନ ଓ ନୀତିବିଜ୍ଞାନ ମଧ୍ୟ କେବଳ ତତ୍ତ୍ୱରାଜ୍ୟରେ ନିବଦ୍ଧ ଥାଇ ଜ୍ଞାନାଲୋକରେ ମନୋରାଜ୍ୟକୁ ଉଦ୍ଭାସିତ କରି ଦେଲେହେଁ ହୃଦୟକୁ ସ୍ପର୍ଶ ନ କରିବାରୁ ଜୀବନ ଉପରେ ତାହାର ମଧ୍ୟ ପ୍ରଭାବ ହିଁସା କ୍ଷୀଣ ଓ ସଙ୍କୁଚିତ ହୋଇ ରହିଛି । ତତ୍ତ୍ୱ କେବଳ ତତ୍ତ୍ୱଭାବରେ ରହିଲେ ତାହାର ଫଳ କଅଣ ? "ସୁଚିନ୍ତିତଂଚୌଷଧମାତୁରାଣାଂ

ନ ନାମମାତ୍ରେଣ କରୋତ୍ୟରୋଗଂ ।" ଖୁବ ଅବ୍ୟର୍ଥ ମହୌଷଧ ଜାଣି ଶୁଣି ରଖିଲେ କିମ୍ବା ରୋଗବେଳେ କେବଳ ମୁଖରେ ଉଚ୍ଚାରଣ କଲେ ତ ରୋଗୋପଶମ ହେବ ନାହିଁ । ଔଷଧକି ଯଥାନିୟମ ବ୍ୟବହାର କରି ନ ପାରିଲେ ସେଥିରେ ଫଳ କଅଣ ? ସେହିପରି ମହା ମହା ସତ୍ୟ ଶାସ୍ତ୍ରରୁ ଉଦ୍ଧାର କରି ମୁଖସ୍ଥ କରି ସଭାସମିତିରେ ନିଜର ସ୍ୱଭାବସିଦ୍ଧ ବାକ୍‌ଚାତୁରୀବଳରେ ସଭାମଣ୍ଡପ ବିକମ୍ପିତ କଲେ ମଧ ବକ୍ତା ତଥା ଶ୍ରୋତାର ହୃଦୟଭୂମି ପୂର୍ବପରି ଅନୁର୍ବର ମରୁ କିମ୍ବା ବନ୍ୟାକ୍ତ ଗୁଳ୍ମଜଟିଳ ବେଣାଭୂମିରେ ପରିଣତ ହୋଇ ପାରେ । ନୀତିବାକ୍ୟ ବା ସଦୁପଦେଶ କେବଳ ରସନାରେ ନୃତ୍ୟ କରି ଯଦି ହୃଦୟର ଗଭୀରତମ ପ୍ରଦେଶକୁ ଅନୁପ୍ରାଣିତ ନ କରେ, ତେବେ ତାହାର ମୂଲ୍ୟ କଅଣ ? ହୁମ୍ବହୁମିଆ ଖରାବେଳେ ଜଣେ ପଣ୍ଡିତଙ୍କୁ ଦେଖି ଧୋବା ପଚାରିଲା— କହେ ରଜାଳଅ ବେଳେ ବୁଅଡ଼େ ଧରି ସରି ହୋଇ ଧାଇଁଛନ୍ତି କି ?" ପଣ୍ଡିତେ ଉତ୍ତର କଲେ—"ଅନେକ ଦିନରୁ ଗୁରୁକୁଳରେ ବାସ କରୁଥିଲି, ଗୀତାପାଠ ସମାପ୍ତ କରି ଘରକୁ ଯାଉଛି—ଅନେକ ଦିନ ଘର ଛାଡ଼ି ଆସିଛି । ଘରପାଇଁ ମନଟା ଭାରି ଚଞ୍ଚଳ ହୋଇ ଉଠିଛି—ତେଣୁ ଘରମୁହାଁ ହୋଇ ଧାଇଁଛି ପରା !" ଧୋବା କହିଲା—"ଯାଅ ଗୋସାଇଁ, ତୁମର ଗୀତା ପାଠ ଶେଷ ହୋଇ ନାହିଁ ।" ପଣ୍ଡିତେ ଅବାକ୍ ହୋଇ ତା ମୁହଁକୁ ଚାହିଁ ରହିଲେ ଓ କିଛି କ୍ଷଣ ପରେ ପଚାରିଲେ, ମୁଁ ଗୀତାପାଠ ଶେଷ କରି ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇ ଆସିଲି—ତୁମେ କିପରି ଜାଣିଲ, ମୋର ପାଠ ଶେଷ ହୋଇ ନାହିଁ ବୋଲି । ଧୋବା ହସି ହସି କହିଲା—ମୁଁ କହୁଛି ଶେଷ ହୋଇ ନାହିଁ—ଯାଅ ତୁମର ଗୁରୁଦେବଙ୍କୁ ଏକଥା ପଚାରିବ, ସେ କଅଣ କହିବେ ଦେଖ । ପଣ୍ଡିତେ ଫେରି ଗୁରୁଙ୍କୁ ପଚାରିବାରୁ ସେ କହିଲେ, ହଁ ଧୋବା ଯାହା କହୁଛି ତାହାହିଁ ଠିକ କଥା । କାରଣ ତୁମେ ଗୀତାର ନୀତି-ମାଳା ଓ ତଥ୍ୟାବଳୀ କେବଳ ମାତ୍ର କଣ୍ଠସ୍ଥ କରିଛ ସତ୍ୟ, ସେ ଗୁଡ଼ିକର ସାରବତ୍ତା ହୃଦୟଙ୍ଗମ କରି ନାହିଁ । ଗୀତାର ତତ୍ତ୍ୱ ହୃଦୟଙ୍ଗମ କରିଥିଲେ ତୁମେ ଏପରି ଗୃହମେଧୀ ପରି ଅସକ୍ତ ଚିତ୍ତରେ ଧାଇଁ ନଥାନ୍ତ; ଏହି କଥା

କହିବାହିଁ ଉଚିତର ମତଲବ । ପ୍ରକୃତ ଗୀତାଧ୍ୟାୟୀ ଅନାସକ୍ତଚିତ୍ତ ହେବାର କଥା । ତୁମର ତ ତାହା ହୋଇ ନାହିଁ—କେବଳ ଜ୍ଞାନର ବୋଝ ମସ୍ତକରେ ବହନ କରୁଛ ମାତ୍ର—ତାହାର ଉପାଦେୟତା, ସରସତା ଓ ସାରବତ୍ତା ତୁମର ହୃଦୟଙ୍ଗମ ହୋଇ ନାହିଁ—ତାହାର ପୂରାପୂରି ଉପଲବ୍ଧି ନ ହେବା ଯାଏ ଗୀତାପାଠର ସାର୍ଥକତା କାହିଁ ?” ଏହାହିଁ ଷଡ୍‌ଦର୍ଶନ ଓ ଗୀତାପ୍ରମୁଖ ସିଦ୍ଧାନ୍ତବହୁଳ ଧର୍ମଶାସ୍ତ୍ରମାନଙ୍କଠାରେ ପ୍ରଯୁଜ୍ୟ । ବେଦାନ୍ତ ଅଧ୍ୟୟନ କରି ସୁଦ୍ଧା ଯଦି କେହି ବହିର୍ମୁଖ ରହେ ଓ ଅତୀନ୍ଦ୍ରିୟ ଜଗତର ସମ୍ବାଦ ରଖି ସୁଦ୍ଧା ଇନ୍ଦ୍ରିୟାସକ୍ତ ହୋଇ ଚିରଜୀବନ ବାସ କରେ, ତେବେ ସେପରି ଅଧ୍ୟୟନର ଫଳ କଅଣ ? ଅନ୍ତର୍ମୁଖୀ କରିବାପାଇଁ କେବଳ ଅଧ୍ୟୟନ ଯଥେଷ୍ଟ ନୁହେଁ, ଅନୁଶୀଳନ ଓ ଅନୁଭୂତିର ପ୍ରୟୋଜନ ।

ପୂର୍ବରୁ କହିଛି, ଶାସ୍ତ୍ରମତ ଅନୁପାନ ଅନୁସାରେ ନିୟମିତ ଭାବରେ ସେବନ ନ କଲେ ଖୁବ ଉତ୍ତମ ମହୌଷଧି ମଧ୍ୟ କେବଳ ନାମୋଚ୍ଚାରଣରେ ଫଳପ୍ରଦ ହୁଏ ନାହିଁ । ପୁଣି କହିବାକୁ ଚାହେଁ, ସେବନ କଲେ ମଧ୍ୟ ସ୍ଥଳବିଶେଷରେ ତାହା ସମ୍ପୂର୍ଣ୍ଣ ଫଳପ୍ରଦ ନ ହୋଇ ପାରେ ଏବଂ କେବେ କେବେ ମଧ୍ୟ ଏକାବେଳକେ ବ୍ୟର୍ଥ ହୋଇଯାଏ । ତାହାର କାରଣ ସେବିତ ଔଷଧ ଯଦି ପାକକ୍ରିୟାଦୋଷରୁ କିମ୍ବା ଅନ୍ୟ କୌଣସି ଆଭ୍ୟନ୍ତରୀଣ ଶାରୀରିକ ତ୍ରୁଟିନିବନ୍ଧନ ପରିପାକ ନ ହୋଇ ରକ୍ତସଙ୍ଗରେ ସମ୍ମିଶ୍ରଣର ସୁଯୋଗ ନ ପାଏ, ତାହାହେଲେ ଔଷଧର ଗୁଣରେ ଶରୀରଯନ୍ତ୍ରକ୍ରିୟା ନିୟନ୍ତ୍ରିତ ହୋଇ ପାରେ ନା । ତେଣୁ ଏ ଔଷଧ ସେବନଠାରୁ ଶରୀରସ୍ଥ କୌଣସି ଅଂଶ ଫୋଡ଼ି ଔଷଧକୁ ଦ୍ରବ ଅବସ୍ଥାରେ ଏକାବେଳକେ ରକ୍ତସଙ୍ଗରେ ମିଶାଇ ଦେବାର ନବାବିଷ୍କୃତ ପ୍ରଣାଳୀକୁ ଆଶୁଫଳପ୍ରଦ ବୋଲି ବିବେଚନା କରିଯାଉଛି । ଭିନ୍ନ ଭିନ୍ନ ଶାରୀରିକ ବ୍ୟାଧିନିବାରଣ ନିମନ୍ତେ ଏକହିଁ ଔଷଧକୁ ଭିନ୍ନ ଭିନ୍ନ ଅନୁପାନ ସାହାଯ୍ୟରେ ସେବନ କରିଇବାର ବ୍ୟବସ୍ଥା ମଧ୍ୟ ଅଛି । କେଉଁ ରୋଗରେ କେଉଁ ଅନୁପାନଦ୍ୱାରା ମକରଧ୍ୱଜ ସେବନ କଲେ ଶୀଘ୍ର ପରିପାକ ହୋଇ ରକ୍ତ ସଙ୍ଗରେ ମିଶି

ଅଶୁଭଫଳପ୍ରଦ ହେବ, ତାହା ବିଶେଷଜ୍ଞ ଭେଷଜମାନେ ଗବେଷଣାଦ୍ୱାରା ସ୍ଥିର କରି ଅଛନ୍ତି । ସର୍ବବିଧ ଭିଷକ୍‌ଜ୍ୱରହର ମହୌଷଧସେବନର ସେହିପରି ବିଧି ବ୍ୟବସ୍ଥା ମଧ୍ୟ ଅଛି । ବେଦାନ୍ତ ଆଦି ଷଡ଼୍‌ଦର୍ଶନ ଓ ଗୀତାଦି ଧର୍ମତତ୍ତ୍ୱସମ୍ବଳିତ ଶାସ୍ତ୍ରମାନଙ୍କରୁ ଯେଉଁ ଯେଉଁ ନୀତିବାଣୀ ଆମ୍ଭେମାନେ ପାଇଥାଉଁ, ସେଗୁଡ଼ିକ କିପରି ଭାବରେ ଜନତାର ରୁଚି ଅନୁଯାୟୀ ଉପସ୍ଥାପିତ ହେଲେ ହୃଦୟସ୍ପର୍ଶୀ ହୋଇ ସେମାନଙ୍କର ଜୀବନକୁ ମହାଭାବର ପ୍ରେରଣାରେ ଅନୁପ୍ରାଣିତ କରିବ ଓ ହୃଦୟର ସ୍ତରେ ସ୍ତରେ ଓତପ୍ରୋତ ଭାବରେ ପ୍ରଭାବ ବିସ୍ତାର କରି ହୃଦୟମଣ୍ଡଳ ସରସ ଓ ଉର୍ବର କରିଦେଲେ ଆତ୍ମୋନ୍ନତିର ବୀଜ ଅବାଧରେ ଉନ୍ମେଷିତ ହେବ । ତାହାହିଁ ବିଚାର୍ଯ୍ୟ ।

ନୀରସ ଶୁଷ୍କତର୍କସମ୍ବଳିତ ନୀତିବାକ୍ୟ, ଅଧ୍ୟାତ୍ମବିଜ୍ଞାନର ଗବେଷଣା-ପୂର୍ଣ୍ଣ ସିଦ୍ଧାନ୍ତସମୂହ, ଏମନ୍ତ କି ଷଡ଼୍ ଦର୍ଶନର ଅତୀନ୍ଦ୍ରିୟ ଜଗତର ତଥ୍ୟାବଳୀ ଓ ଗୀତାର ମହାବାକ୍ୟ ମଧ୍ୟ ସହଜରେ ହୃଦୟ ସ୍ପର୍ଶ ନ କରି କେବଳ ଅଧ୍ୟାତ୍ମ ଜଗତର ଆଲୋକଚ୍ଛଟା ବିସ୍ତାରପୂର୍ବକ ଅଜ୍ଞାନ ଅନ୍ଧକାର, ମୋହତମସା ଦୂର କରେ ମାତ୍ର । ମନୋରାଜ୍ୟର ଅନ୍ଧକାର ଦୂର ହେଲେ ମଧ୍ୟ ହୃଦୟକୁ ସ୍ପର୍ଶ ନ କରିବାଯାଏ ସେ ଗୁଡ଼ିକ କେବଳ ମହାବାକ୍ୟ ବା ସାର ସତ୍ୟରୂପେ ମନୋମନ୍ଦିରକୁ ଅଲଙ୍କୃତ କରି ବିରାଜମାନ ଥାଆନ୍ତି । କିନ୍ତୁ ହୃଦୟକ୍ଷେତ୍ର ତଦ୍ଭାବ ଅନୁପ୍ରାଣିତ ନ ହେବାଯାଏ ଜୀବନର ଉତ୍କର୍ଷବିଧାନ ସମ୍ଭବପର ହୁଏନା । ସେ ଗୁଡ଼ିକ କେବଳ ମନୋମୟ କୋଷ ପର୍ଯ୍ୟନ୍ତ ପ୍ରଭାବ ବିସ୍ତାର କରନ୍ତି । କ୍ୱଚିତ୍ କଦାଚିତ୍ ବିଜ୍ଞାନମୟ ଭୂମିକାରୂଢ଼ ହେଲେ ହୁଅନ୍ତି, କିନ୍ତୁ ଆନନ୍ଦମୟ କୋଷରେ ପ୍ରବେଶାଧିକାର ସେମାନଙ୍କର ନ ହେବାଯାଏ ଜୀବନର ମହା ଆଦର୍ଶ ତଦ୍ଭାବ ଖଣ୍ଡିତ ହୁଏ । ସେହି ଆଦର୍ଶ ଅକ୍ଷୁଣ୍ଣ ରଖିବା ନିମିତ୍ତ ସେମାନଙ୍କୁ ଆନନ୍ଦମୟ କୋଷକୁ ନିମନ୍ତ୍ରଣ କରିବାହିଁ ସମୀଚୀନ । ଆନନ୍ଦମୟ କୋଷରେ ପ୍ରବେଶ କରିବାକୁ ହେଲେ ସେମାନଙ୍କୁ ଆନନ୍ଦମୟ କୋଷର ଅନୁରୂପ ରୂପ ପରିଗ୍ରହ କରିବାକୁ ହେବ । ଆନନ୍ଦବ୍ରହ୍ମଙ୍କ ଉପାସନାର ଉପଯୋଗୀ ହେବାକୁ ହେବ ।

ଆନନ୍ଦବ୍ରହ୍ମଙ୍କ ଉପାସନାର ଅଧିକାରୀ ହେବାକୁ ଗଲେ, ଆନନ୍ଦ-ମୟ ସାଜିବାକୁ ହେବ । ସତ୍ୟର ଅତ୍ୟୁଜ୍ଜ୍ୱଳ ଶୁଭ୍ରକିରଣରେ ଆଖି ଝଲସି ଯାଏ, କିନ୍ତୁ ସୌନ୍ଦର୍ଯ୍ୟର କମନୀୟ ରଞ୍ଜନ-କିରଣ ବଡ଼ହିଁ ଚିତ୍ତାକର୍ଷକ ହୋଇଥାଏ । ତେଣୁ ସତ୍ୟଶିବଙ୍କୁ ସୌନ୍ଦର୍ଯ୍ୟର ଆବରଣରେ ତାଙ୍କି ହୃଦୟରଞ୍ଜନ ଆନନ୍ଦମୟ ବିଗ୍ରହ ଉପସ୍ଥାପିତ କରିବାକୁ ହେବ । ମଣ୍ଡନ-କଳାନିପୁଣ ସିଦ୍ଧହସ୍ତ ଦ୍ୱାରାହିଁ ତାହା ସୁଗ୍ଧୁରୂପେ ସମ୍ପନ୍ନ ହୋଇଥାଏ । ସତ୍ୟଶିବଙ୍କ ପ୍ରଚ୍ଛନ୍ନ ରୂପମାଧୁରୀ ମଣ୍ଡନ-କଳାଜୀବୀମାନେହିଁ ନିଜର କଳା-କୌଶଳଦ୍ୱାରା ପ୍ରସ୍ଫୁଟ କରି ତାହାକୁ ହୃଦୟଗ୍ରାହୀ କରନ୍ତି । ତତ୍ତ୍ୱଜିଜ୍ଞାସୁ ଓ ତତ୍ତ୍ୱାନୁସନ୍ଧିତ୍ସୁ ମନୀଷୀମାନଙ୍କର କୃତି-କଳାପ ଉପରେହିଁ ଲଳିତ-କଳାଜୀବୀମାନଙ୍କର କଳା-କୁଶଳତା ବିକାଶଲାଭ କରେ । ଯାହା ସନାତନ ସତ୍ୟ, ଯାହା ନିଖିଳ କଲ୍ୟାଣର ଆଧାର, ସେହି ସତ୍ୟ-ଶିବହିଁ ଏକ ସୌନ୍ଦର୍ଯ୍ୟର ମନୋହାରିଣୀ ମୂର୍ତ୍ତି ପରିଗ୍ରହ କରି ଚିରସୁନ୍ଦର ଓ ଆନନ୍ଦମୟ ରୂପରେ ଆମ୍ଭମାନଙ୍କ ସମୀପରେ ଉପସ୍ଥିତ ହୋଇ ଉଚ୍ଛଳ ହୃଦୟର ସ୍ୱତଃ-ସ୍ଫୂର୍ତ୍ତି ଅଭିନନ୍ଦନ ଗ୍ରହଣ କରେ । ବିଦ୍ରୋହୀ ହୃଦୟ ସେ ଆକର୍ଷଣୀ ଶକ୍ତିକୁ ଏଡ଼ି ବିପଥଗାମୀ ହେବାର କଳ୍ପନା ମଧ୍ୟ କରିବାର ଅବସର ପାଏ ନାହିଁ । ଆନନ୍ଦମୟ କୋଷରେ ବିଳାସୋପଯୋଗୀ ସତ୍ୟଶିବସୁନ୍ଦରଙ୍କ ସେ ରୂପ କିପରି ? ମହାକବିଙ୍କ ଭାଷାରେ କହିବାକୁ ଗଲେ, "ଗମନ ନର୍ତ୍ତନ ଲୀଳା, ବଚନ ସଙ୍ଗୀତକଳା ସ୍ମିତିର ଗୃହାଣୀ ଆକର୍ଷଣ । ରଙ୍ଗ ବିନା ନାହିଁ ଅଙ୍ଗ, ଭାବ ବିନା ନାହିଁ ସଙ୍ଗ, ରସମୟ ଦେହର ଗଠନ ।" ଏହାହିଁ ଆଦର୍ଶ-ସୌନ୍ଦର୍ଯ୍ୟର ମୂର୍ତ୍ତି । ମାଧୁର୍ଯ୍ୟ-ପରାକାଷ୍ଠାର ବିଗ୍ରହ ।

ପ୍ରକାଶ ଥାଉ କି ସତ୍ୟ, ଶିବ ଓ ସୁନ୍ଦର ଏକହିଁ ପରମ ଓ ଚରମ ସତ୍ତାର ବିବିଧ ବିକାଶ ହେଲେହେଁ ପ୍ରକାଶ ବା ବିଳାସଭେଦରେ ବିବିଧ ମୂର୍ତ୍ତିରେ ଆମ୍ଭମାନଙ୍କ ସମୀପରେ ପ୍ରତିଭାତ ହୁଅନ୍ତି । ନିରାଟ ନିଘଞ୍ଚ ସତ୍ୟର ବିଶଦ ବିଗ୍ରହର ଅତ୍ୟୁଜ୍ଜ୍ୱଳ ପ୍ରଭାଜାଲରେ ଆଖି ଝଲସି ପଡ଼େ; ତେଣୁ ସତ୍ୟର ବରେଣ୍ୟ ମୂର୍ତ୍ତି ଆଗରେ ଆମ୍ଭେମାନେ ନତମସ୍ତକ ହେଉଁ ସତ୍ୟ,

କିନ୍ତୁ ଭୟ, ସଙ୍କୋଚ ଓ ସମ୍ଭ୍ରମର ଆତିଶଯ୍ୟରୁ ତାଙ୍କୁ ମମତା ଓ ହୃଦ୍ୟତାର ବନ୍ଧନରେ ବାନ୍ଧି ନିଜର ବୋଲି ଗ୍ରହଣ କରିବାକୁ ସାହସ ହୁଏ ନାହିଁ । ମନୋମନ୍ଦିରର ରତ୍ନସିଂହାସନରେ ରଖି ପୂଜା କରୁଁ, କିନ୍ତୁ ପରମ ସୁହୃଦ ଭାବରେ ନିବିଡ଼ ଭୁଜ-ବନ୍ଧନରେ ସ୍ନେହାଲିଙ୍ଗନର ଇଚ୍ଛା ହୁଏ ନା । ଦୂରେ ଦୂରେ ରହି ଦୂରୁଁ ଦୂରୁଁ ଦଣ୍ଡବତ କରି ପରାଙ୍ମୁଖ ହେଉଁ ।

ସେହିପରି ମଙ୍ଗଳମୟ ଶିବଙ୍କର ଭସ୍ମବିଲେପନ, ଭୁଜଙ୍ଗଭୂଷଣ, ଜଟାଜୂଟଧାରୀ ଶ୍ମଶାନବିହାରୀ ରୂପ ଯେ ଭୟାବହ ହେବ ଏଥିରେ ସନ୍ଦେହ କଅଣ ? ବସ୍ତୁତଃ ବହିର୍ମୁଖ ଜୀବପକ୍ଷରେ ପ୍ରକୃତ ମଙ୍ଗଳର ସନ୍ଧାନ ମରୁଭୂମିରେ ମରୀଚିକାର ପଶ୍ଚାଦ୍ଧାବନ କହିଲେ ଅତ୍ୟୁକ୍ତି ହେବ ନାହିଁ । ମାୟିକ ଜଗତର ଆପାତମଧୁର ଓ ପରିଣାମରେ ମହାଅମଙ୍ଗଳକର ତଥାକଥିତ ଭଙ୍ଗୁର ସୁଖଲାଳସାରେ ସମସ୍ତେ ଧାବମାନ । ଅନ୍ତର୍ମୁଖୀ ହୋଇ ସ୍ୱରୂପ ଉପଲବ୍‌ଧି ନ ହେବାଯାଏ ମନୁଷ୍ୟ ସହଜରେ ଶ୍ରେୟଃ ଓ ପ୍ରେୟଃ ମଧ୍ୟରେ ଯେ ସ୍ୱର୍ଗ ଓ ନରକର ପାର୍ଥକ୍ୟ ଅଛି, ତାହା ହୃଦୟଙ୍ଗମ କରି ପାରେ ନାହିଁ । ଆନନ୍ଦର ସନ୍ତାନ ମନୁଷ୍ୟ ଶାଶ୍ୱତ ଚିନ୍ମୟ ଧାମର ପ୍ରେମରାଜ୍ୟଚ୍ୟୁତ ହୋଇ ପ୍ରପଞ୍ଚର ଭୌତିକ ସୀମାରେ ପଦାର୍ପଣ କରି ମାୟାପିଶାଚୀର କବଳରେ ପଡ଼ି ଭୌତିକ ବାତାବରଣର ପ୍ରଭାବରୁ ଚୈତନ୍ୟସତ୍ତା ଘେନି ସୁଦ୍ଧା ଜଡ଼ ସଙ୍ଗରେ ନିବିଡ଼ ବନ୍ଧନରେ ବଦ୍ଧ ହୋଇ ଓ ନିଜକୁ ପଞ୍ଚଭୂତାତ୍ମକ ଜଡ଼ପିଣ୍ଡବିଶେଷ ମନେ କରି ଅନାଦି ବହିର୍ମୁଖ ହୋଇ ପଡ଼ିଛି । ମହାଭୂତାଭିନିବେଶଜନିତ ଘୋର ମହାନିଦ୍ରାରେ ପଡ଼ି ଶ୍ରେୟଃ ବର୍ଜନ କରି ପ୍ରେୟର ସନ୍ଧାନରେ ଦିବାନିଶି ଧାବମାନ ହେଉଥାଏ । ମାୟାଶୃଙ୍ଖଳ ଛେଦ କରି ଓ ଜଡ଼ାଭିନିବେଶ ଛାଡ଼ି ଆତ୍ମାର ସ୍ୱରୂପ ଉପଲବ୍‌ଧି (ଅର୍ଥାତ୍ ଚୈତନ୍ୟମୟ ସତ୍ତାର ହୃଦୟଙ୍ଗମ କରିବାହିଁ) ଜୀବର ପରମପୁରୁଷାର୍ଥ ବା ନିଃଶ୍ରେୟସ । କିନ୍ତୁ ଅନାଦି ବହିର୍ମୁଖ ଜୀବ ପକ୍ଷରେ ସେହି ପରମ ମଙ୍ଗଳମୟ ସ୍ୱରୂପ ପ୍ରତି ଆକାଂକ୍ଷା ହେବା କାଠକର ପାଠ । ସେ ପ୍ରେୟର ସନ୍ଧାନରେ ସତତ ବ୍ୟସ୍ତ । ଶ୍ରେୟ ଯେ ବାସ୍ତବିକ ପ୍ରେୟ ଓ ଯାହା ସେ ପ୍ରେୟ ବୋଲି ଗ୍ରହଣ କରୁଛି ତାହା ଯେ ଶ୍ରେୟ ନୁହେଁ,

ତାହା ତାହାର ଅନୁଭବ ନାହିଁ । ଯେପରି ପିତ୍ତପ୍ରକୋପଦୁଷ୍ଟ ରସନାକୁ ସ୍ୱଭାବମଧୁର ମିଶ୍ରୀ ବା କନ୍ଦ ତିକ୍ତ ଲାଗେ, ସେହିପରି ଭବବ୍ୟାଧି-ପିତ୍ତ-ବିକାରଗ୍ରସ୍ତ ବହିର୍ମୁଖ ଜୀବକୁ ପରମ ଓ ଚରମ ନିଃଶ୍ରେୟସ ଭଲ ନ ଲାଗିବାରୁ ସେ ପ୍ରେୟର ସନ୍ଧାନରେ ଧାଏଁ । ଏହାହିଁ ତାହାର ଅନାଦି-କାଳର ଚିତ୍ତବିକାରର ଲକ୍ଷଣ ଅଟେ । ଏହାହିଁ ସର୍ବବାଦସମ୍ମତ ସିଦ୍ଧାନ୍ତ ।

ତେଣୁ ଅବୋଧ ଶିଶୁ ଅଜଟପଣିଆ କରି ତିକ୍ତ ଔଷଧ ସେବନରେ ପରାଙ୍ମୁଖ ହେଲେ ସ୍ନେହମୟୀ ଜନନୀ ଯେପରି ତିକ୍ତ ଔଷଧଟିକୁ ଗୁଡ଼ିଆ ବାଣ୍ଡ ଚିନିର ପୁଟ ଦେଇ କିମ୍ବା ଅନ୍ୟ କୌଣସି ଶିଶୁର ପ୍ରିୟଖାଦ୍ୟ ସଙ୍ଗେ ଗୋଳାଇ ଔଷଧଟିକୁ ସେବନ କରାଇ ଶିଶୁର ହିତସାଧନ କରେ, ସେହିପରି ବିଶ୍ୱମଙ୍ଗଳକାମୀ ଲଳିତକଳାବିତ୍‌ମାନେ ଶ୍ରେୟକୁ ସୌନ୍ଦର୍ଯ୍ୟର ରୂପରେ ତଥା ପରମପ୍ରେୟରୂପରେ ଜନସମୀପରେ ଉପସ୍ଥାପିତ କରନ୍ତି । ସତ୍ୟଶିବହିଁ ପୁଣି ଚିରସୁନ୍ଦରରୂପରେ ବିରାଜମାନ ହୋଇ ନିଖିଳ ହୃଦୟରଞ୍ଜନକାରୀ ହୋଇଥାଏ । ଏକହିଁ ଇକ୍ଷୁରସ ଯେପରି ବିକାରତାରତମ୍ୟରେ ଗୁଡ଼, ଚିନି ଓ ମିଶ୍ରୀ ରୂପ ଧାରଣ କଲେହେଁ, ବସ୍ତୁତଃ ଏକହିଁ ମୂଳ ପଦାର୍ଥର ବିକାର ମାତ୍ର, ସେହିପରି ସତ୍ୟ ଶିବ ଓ ସୁନ୍ଦର ତତ୍ତ୍ୱତଃ ଏକ ହେଲେହେଁ, ବିକାଶଗତ ଓ ପ୍ରକାଶଜନିତ ପାର୍ଥକ୍ୟ ଯୋଗୁଁ ଜୀବନ ଉପରେ ଭିନ୍ନ ଭିନ୍ନ ଭଙ୍ଗୀର ପ୍ରଭାବ ବିସ୍ତାର କରନ୍ତି ମାତ୍ର । ଏକହି ପଦାର୍ଥର ବିକାର ହେଲେ ମଧ୍ୟ ଖାଦ୍ୟ ହିସାବରେ ଗୁଡ଼, ଚିନି ଓ ମିଶ୍ରୀର ସ୍ୱାଦ, ଉପାଦେୟତା ଓ ସାରବତ୍ତା ଏକ ନୁହେଁ । ସେହିପରି ସତ୍ୟ, ଶିବ ଓ ସୁନ୍ଦର ସ୍ୱରୂପତଃ ଏକ ହେଲେହେଁ ପ୍ରକାଶ ବା ବିକାଶଗତ ପାର୍ଥକ୍ୟ ଯୋଗୁଁ ଜୀବନକୁ ବିଭିନ୍ନ ଭାବରେ ପ୍ରଭାବିତ କରିଥାଆନ୍ତି । ସୁନ୍ଦରହିଁ ହୃଦୟକୁ ବିଭାବିତ ଓ ଅନୁପ୍ରାଣିତ କରି ସରସ, ଉର୍ବର ଓ ଉଚ୍ଛଳ କରିପାରେ । ଏହି ସୁନ୍ଦରର ଉପାସନାହିଁ ଆନନ୍ଦବ୍ରହ୍ମଙ୍କ ଉପାସନା । ବ୍ରହ୍ମାନନ୍ଦ ବୋଲ, ଭୂମାନନ୍ଦ ବୋଲ ବା ପ୍ରେମାନନ୍ଦ ବୋଲ, ଏହା ଆନନ୍ଦବ୍ରହ୍ମଙ୍କର

ଉପାସନାର ବିଭିନ୍ନ ସ୍ତର ବା ପ୍ରଣାଳୀ ମାତ୍ର । ଏହି ବିଶ୍ବଜଗତରେ ଆନନ୍ଦ-ମନ୍ଦାକିନୀର ସହସ୍ର ଧାରା ଅଜସ୍ରଭାବରେ ପ୍ରତିମୂହୂର୍ତ୍ତରେ ଗୁପ୍ତଭାବେ ପ୍ରବାହିତ ହେଉଅଛି । ଲଳିତକଳାବିନୋଦୀମାନେ ସେହି ଆନନ୍ଦ ମନ୍ଦାକିନୀଧାରା ସ୍ୱ ସ୍ୱ ମସ୍ତକରେ ଧାରଣ କରି ନିଜେ ଧନ୍ୟ ହୋଇ ନିଖିଳ ଜୀବଜଗତକୁ ଧନ୍ୟ କରିବାର ପ୍ରୟାସ କରୁଛନ୍ତି । ଭସ୍ମୀଭୂତ ସଗର-ସନ୍ତତିଙ୍କୁ ପୁନର୍ଜୀବିତ କଲା ପରି ଭଗୀରଥଙ୍କ ପରି ଏମାନେ ମଧ୍ୟ ଆନନ୍ଦ-ମନ୍ଦାକିନୀର ସମ୍ବାଦ ବିଶ୍ବଜଗତରେ ପ୍ରଚାର କରି ମାନବର ମୃତକଳ୍ପ ହୃଦୟ-ବୃତ୍ତିଗୁଡ଼ିକୁ ଆନନ୍ଦମୟୀ ଅଳକାନନ୍ଦାର ପବିତ୍ର ମୃତସଞ୍ଜୀବନୀଧାରା-ସିଞ୍ଚନ ଦ୍ୱାରା ସଜୀବ, ସତେଜ ଓ ସରସ କରୁଅଛନ୍ତି । ଲଳିତକଳାହିଁ ଶ୍ରେୟଃକୁ ପ୍ରେୟରୂପରେ ଓ ସତ୍ୟଶିବଙ୍କୁ ଚିରସୁନ୍ଦରରୂପରେ ରୂପାୟିତ କରେ ।

ସତ୍ୟ, ଶିବ, ସୁନ୍ଦର ଅସୀମ, ଅନନ୍ତ ଓ ଅଖଣ୍ଡ । ଲଳିତକଳାହିଁ ତାହାକୁ ସୀମାର ବନ୍ଧନରେ ବାନ୍ଧି ସସୀମ ଶାନ୍ତମୂର୍ତ୍ତିରେ ପ୍ରକାଶ କରି ନିଖିଳ ହୃଦୟରଞ୍ଜନର ଚେଷ୍ଟା କରେ । ଅତୀନ୍ଦ୍ରିୟ ଚିନ୍ମୟରାଜ୍ୟର ଶୋଭାସମ୍ପଦରେ ହୃଦୟ ଭରିଉଠେ; ଆନନ୍ଦମନ୍ଦାକିନୀର ବିମଳଧାରାରେ ହୃଦୟ ଉଚ୍ଛ୍ବଳିପଡ଼େ, ପ୍ରେମାମୃତ ସିଞ୍ଚନରେ ଆଧିବ୍ୟାଧିଗ୍ରସ୍ତ ମାନବ ହୃଦୟରେ ତ୍ରିତାପଜ୍ୱାଳାର ଅଂଶୁ ଉପଶମ ହୁଏ ଏବଂ ପରିଶେଷରେ ଜଡ଼ ଦେହର ପଞ୍ଚଭୌତିକ ସତ୍ତା ପର୍ଯ୍ୟନ୍ତ ଚିନ୍ମୟ ହୋଇଯାଏ । ଏହା ଲଳିତ କଳାସୃଷ୍ଟିର ପରମ ଲକ୍ଷ୍ୟ ଏବଂ ଚରମ ପରିଣତି । ମାନବ-ଜୀବନର ନିୟନ୍ତ୍ରଣରେ ଚାରୁକଳାର ସ୍ଥାନ ଯେ ସର୍ବଶ୍ରେଷ୍ଠ ଓ ସବୁଠାରୁ ଉଚ୍ଚ, ତାହା ସର୍ବବାଦସମ୍ମତ । ତେବେ ଚାରୁକଳାର ଅନୁଶୀଳନ ଏହି କୃତ୍ରିମତାର ଯୁଗରେ ବ୍ୟାହତ ଓ ଖଣ୍ଡିତ ହୋଇଛି ବୋଲି କଥାଟା ଶୁଣିବାକୁ ହିଁବ ଅଦ୍ଭୁତ ଲାଗୁଛି । ତେବେ ଆଜି ମଧ୍ୟ କଳାବିତ୍ କବି, ନାଟ୍ୟକାର ଓ ଔପନ୍ୟାସିକ ଏବଂ ଚିତ୍ରଶିଳ୍ପୀମାନେ ସର୍ବତ୍ର ଉଚ୍ଚ ଆଦରରେ ସମାଦୃତ ହେଉଛନ୍ତି । ଆମ୍ଭମାନଙ୍କର ସ୍ୱଦେଶରେ ମଧ୍ୟ ଜୀବନ୍ତ-କବିମାନଙ୍କର ସଚଳ ପ୍ରତିମାଠାରୁ ମୃତକବି-

ମାନଙ୍କର ଅଚଳ ପ୍ରେତାତ୍ମାରେ ଲୋକମାନଙ୍କର ଭକ୍ତି-ପ୍ରୀତି-ଶ୍ରଦ୍ଧାଞ୍ଜଳି ଢେର ବେଶୀ । "ଜୀଅନ୍ତେ ନ ଦେଲ ତୁଣ୍ଡେ, ମଲେ ଦେବ ବାଣ ମୁଣ୍ଡେ" କଥାଟିର ପୂର୍ଣ୍ଣ ସାର୍ଥକତା ଦେଖିବାକୁ ମିଳେ-ଆମ୍ଭମାନଙ୍କର ପ୍ରାତଃସ୍ମରଣୀୟ କବିବରମାନଙ୍କର ଏହି ବିପୁଳ ସମାରୋହରେ ସାଧିତ ସ୍ମୃତିତର୍ପଣରେ । ଅବଶ୍ୟ ସେଗୁଡ଼ିକର ଆନ୍ତରିକତା କେତେ ଗଭୀର ତାହା ମାପିବାର ସୁବିଧା ମୋ ଭାଗ୍ୟରେ ଘଟି ନାହିଁ । ଏହା ଯେ ସାହିତ୍ୟକ୍ଷେତ୍ରରେ ଗୋଟିଏ ନବଜାଗରଣର ସୂଚନା ଦିଏ ଏଥିରେ ସନ୍ଦେହ ନାହିଁ । ସେହି ନବଜାଗରଣକାଂକ୍ଷୀ ନବୀନ ଉଷାର କନକ କିରଣସମ୍ପାତରେ ଆଧୁନିକ ସଭ୍ୟତା-ସମ୍ଭୂତ ମହାଭୂତାବିର୍ଭାବବେଶର ନବିନତା ଯେ କ୍ରମେ ପାତଳା ହୋଇ ପଡ଼ିବ, ଏହାହିଁ ଆଶା କରିବାର କଥା । ତେଣୁ କବିସ୍ମୃତିତର୍ପଣ ଯେ ଗୋଟିଏ ମଙ୍ଗଳମୟ ଜାତୀୟ ଅନୁଷ୍ଠାନରୂପରେ ଗୃହୀତ ହେବା ଉଚିତ, ଏହାହିଁ ଆମ୍ଭମାନଙ୍କର କାମନା । ତେବେ ମରିବା ପୂର୍ବରୁ କବିମାନଙ୍କର ସମ୍ବର୍ଦ୍ଧନା କରି ଓ ଯଥାଯୋଗ୍ୟ ସାହାଯ୍ୟ ସହାନୁଭୂତି ଦେଇ ସେମାନଙ୍କୁ ଉତ୍ସାହିତ କରିବାରେ ଦୋଷ କଅଣ ? କେବେ କବି ମରିବେ ତାକୁ ରହିଁ ନ ବସି ତାଙ୍କର ଜୀବଦ୍ଦଶାରେ ତାଙ୍କୁ ଉତ୍ସାହିତ କଲେ ବୋଧହୁଏ ବେଶୀ ସୁଫଳର ଆଶା କରାଯାଆନ୍ତା । "ଜୀଅନ୍ତେ ତୁଣ୍ଡେ ନ ଦେଇ ମରିବା ପରେ ବାଣ ମୁଣ୍ଡରେ ଦେଲେ କେତେ ନ ଦେଲେ କେତେ ?" ଏହା ନ୍ୟାୟତଃ ଅନେକମାନେ କହି ପାରନ୍ତି । ତେବେ ପରକ୍ଷେପରେ ମୋର ବକ୍ତବ୍ୟ ଏହି;—ମୃତର ସ୍ମୃତିତର୍ପଣ ସମାରୋହରେ ହେଲେ ହେଉ, କିନ୍ତୁ ଆମ୍ଭମାନଙ୍କର ଅତ୍ୟଦ୍ଭୁତ ନବକଳେବରଧାରୀ ସଚଳ ଜଗନ୍ନାଥମାନଙ୍କର ଗୁଣ୍ଡିଗୁବିଜୟକୁ କେହି ଯଦି ଆଖିକୋଣରେ ଟିକିଏ ହେଲେ ନ ଗ୍ରହାନ୍ତି, ତେବେ ଲୋକେ ଆମ୍ଭମାନଙ୍କୁ କଅଣ କହିବେ ? ଯାନକବି କବାଟକୋଣରେ ବସି,

> "ଛାର ଭାଗ୍ୟ ମୋର ପିହିତ ପାଷାଣେ
> ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ।"

ଗାଉଥିବାବେଳେ ଅମ୍ଭେମାନେ ରାମଚନ୍ଦ୍ର ଭବନରେ ବନ୍ଧୁବାନ୍ଧବ ଓ

ବାଦ୍ୟଶାଳାରେ ସମସ୍ତେ ମିଳି, "କେଉଁଠାରେ ମାଇଲ ଗଲା, କେଉଁ ଗାଁଇଜରେ ରହିଲେ ମୋ ରଜା, ତେଲଙ୍ଗି ବାଇଦ ବଜା," ସମସ୍ୱରରେ ଗାଇ ଗାଇ ଗଗନମଣ୍ଡଳ ପ୍ରତିଧ୍ୱନିତ କରି ୬ନନ୍ଦକିଶୋର ବଳଙ୍କ ସ୍ମୃତିତର୍ପଣରେ ମାତି ରହିବାଟା କିଅଣ ଭଲ ବିଷୟଗୁଣ ନୁହେଁ? ସୁତରାଂ ସେଉଁ-ସଦନୁଷ୍ଠାନର ମୂଳଦୁଆ ଦିଆଗଲା, ତାହାକୁ ଅସମ୍ପୂର୍ଣ୍ଣ ରଖିବା ବାଞ୍ଛନୀୟ ନୁହେ। ମୋର ଅନୁରୋଧ—କି ଜୀବିତ, କି ମୃତ ବା ଜୀବନ୍ମୃତ ସମସ୍ତ ସାହିତ୍ୟିକମାନଙ୍କ ଉପରେ ସହାନୁଭୂତିସୁଧା ସିଞ୍ଚନ କରି ସେମାନଙ୍କୁ ଉତ୍ସାହିତ କରି ନେତୃବର୍ଗ ଯଶଃଶ୍ରୀମଣ୍ଡିତ ହେଉନ୍ତୁ। ଆମ୍ଭମାନଙ୍କ ଦେଶରେ ଅନେକ କବି ଓ ଲେଖକ ଅଛନ୍ତି, ଯେଉଁମାନେ ସହାନୁଭୂତି ଅଭାବରୁ ନିଜ ନିଜର ଲେଖାବଳୀ ପ୍ରକାଶ କରିବାକୁ କ୍ଷମ ହୋଇ ନାହାନ୍ତି ଏବଂ ଉତ୍ସାହ ଓ ଉତ୍ତେଜନାର ଅଭାବରୁ ମ୍ରିୟମାଣ ହୋଇ ପଡ଼ିଛନ୍ତି। ଏହାର ଆଶୁ ପ୍ରତିକାର ବାଞ୍ଛନୀୟ। ଏ ଦିଗରେ ଏପର୍ଯ୍ୟନ୍ତ ଯେ ଚେଷ୍ଟା ହେଉଛି, ତାହା ଯଥେଷ୍ଟ ନୁହେଁ ବୋଲି ମୋର ଧାରଣା। ଦେଶର ଲବ୍ଧପ୍ରତିଷ୍ଠ ଲେଖକମାନେ ଦେଶମାତୃକାଙ୍କଠାରୁ କେବଳ ବିମାତୃସୁଲଭ ଅଯତ୍ନ ଓ ଔଦାସୀନ୍ୟହିଁ ପାଇ ଆସୁଛନ୍ତି। କି ଦୁଃଖର କଥା ସତେ!

ଲଳିତ-କଳା ସୌନ୍ଦର୍ଯ୍ୟର ଉପାସନା, ଆନନ୍ଦବ୍ରହ୍ମର ଉପାସନା। କଳାବିତ୍‌ମାନେ ସୌନ୍ଦର୍ଯ୍ୟର ଉପାସକ; ଆନନ୍ଦବ୍ରହ୍ମଙ୍କର ପୁରୋଧା। ସେମାନେ ସତ୍ୟଶିବସୁନ୍ଦରଙ୍କ ଉପାସନାପଦ୍ଧତି ଜାଣନ୍ତି ଓ ନାନା ଭାବରେ ଭାବ-ପ୍ରେମର ତରଙ୍ଗ ଖେଳାଇ ମାନବହୃଦୟକୁ ଆନନ୍ଦ-ବ୍ରହ୍ମଙ୍କର ବିହାରଭୂମି କରିଦିଅନ୍ତି। ଲଳିତ କଳା ଅଭିବ୍ୟକ୍ତି ଭେଦରେ ନାନାରୂପ ଧାରଣ କରେ। ଭାସ୍କର୍ଯ୍ୟ (Sculpture), ସ୍ଥାପତ୍ୟ (Architecture), ଚିତ୍ରକଳା ବା ଅଙ୍କନ ବା ରଞ୍ଜନକଳା (Painting), ସଙ୍ଗୀତ (Music) ଏବଂ କବିତା ବା ସାହିତ୍ୟ (Poetry or literature)। ଏମାନଙ୍କ ମଧ୍ୟରୁ ଭାସ୍କର୍ଯ୍ୟ ବା ଖୋଦନଶିଳ୍ପ, ସ୍ଥାପତ୍ୟ ବା ନିର୍ମାଣଶିଳ୍ପ ତଥା ଚିତ୍ରକଳା ଚକ୍ଷୁରିନ୍ଦ୍ରିୟଗ୍ରାହ୍ୟ ଏବଂ ସଙ୍ଗୀତ ଓ କାବ୍ୟ

ଶ୍ରୁତବେଦ୍ୟ, କିନ୍ତୁ ଦୃଶ୍ୟକାବ୍ୟ ଦର୍ଶନେନ୍ଦ୍ରିୟଦ୍ୱାରା ମଧ୍ୟ ଗ୍ରହଣୀୟ । ଭୁବନେଶ୍ୱର ଓ କୋଣାର୍କର ଦେବାଳୟମାନଙ୍କରେ ପ୍ରସ୍ତରର ମୂର୍ତ୍ତି-ଦେହରେ ଖୋଦନଶିଳ୍ପର ଯେଉଁ କଳାନୈପୁଣ୍ୟ ଅଦ୍ୟାପି ବିରାଜମାନ ଓ ସେମାନଙ୍କର ଗଠନପ୍ରଣାଳୀରେ ଯେଉଁ ନିର୍ମାଣକୁଶଳତା ଦେଖାଯାଏ, ତାହା ଉତ୍କଳ ଶିଳ୍ପୀମାନଙ୍କର ଭାସ୍କର୍ଯ୍ୟ ଓ ସ୍ଥାପତ୍ୟଶିଳ୍ପରେ ହସ୍ତ-ପାଟବର ନିଦର୍ଶନ । ତାଜମହଲରେ ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ ଚିତ୍ର-କଳାର ବିଶେଷ ସମାବେଶ ଦେଖାଯାଏ । ସଙ୍ଗୀତରେ ଭାବ ଓ ଭାଷାଠାରୁ ସ୍ୱର, ତାନ ଓ ଲୟର ସ୍ଥାନ ଉଚ୍ଚରେ—ନାଦ ବ୍ରହ୍ମର ଉପାସନାର ଏହାହିଁ ପ୍ରକୃଷ୍ଟ ପନ୍ଥା; ତେଣୁ କେହି କେହି କହନ୍ତି— "ଗାନାତ୍ ପରତରଂ ନହି" । ବାସ୍ତବିକ ଗୀତରେ ଫଣଧର ସର୍ପ ପର୍ଯ୍ୟନ୍ତ ମୁଗ୍ଧ ହୋଇଯାଏ । ସାପୁଆ କେବଳ ଗୋଟିଏ ବିଶିଷ୍ଟ ସ୍ୱରସାଧନ କରି ସର୍ପକୁ ବଶୀଭୂତ କରି ପକାଏ । ମନୁଷ୍ୟର ହୃଦୟ ଉପରେ ସଙ୍ଗୀତର ପ୍ରଭାବ ଖୁବ ବେଶୀ । ଉଚ୍ଚ ଅଙ୍ଗର ସଙ୍ଗୀତ ପ୍ରାଣରେ ଉନ୍ମାଦନା ଆଣିଦିଏ—ଆମ୍ଭମାନଙ୍କୁ ଓ ମତୁଆଲା କରି ପକାଏ । ସଙ୍ଗୀତହିଁ ଅତୀନ୍ଦ୍ରିୟରାଜ୍ୟର ସୂକ୍ଷ୍ମ ପ୍ରେରଣାସ୍ୱରୂପ ମନୁଷ୍ୟ ହୃଦୟକୁ ଆନ୍ଦୋଳିତ କରେ ।

କାନେର ଭିତର ଦିୟା ମରମେ ପଶିଲ ଗୋ
ଆକୁଲ କରିଲ ମୋର ପ୍ରାଣ ।

ସଙ୍ଗୀତର ଉନ୍ମାଦନା ଅପେକ୍ଷାକୃତ କ୍ଷଣିକ, କିନ୍ତୁ କାବ୍ୟର ପ୍ରଭାବ ଗଭୀର ଓ ଚିରସ୍ଥାୟୀ । କାବ୍ୟ ବା ସାହିତ୍ୟକୁ ବ୍ୟାପକ ଅର୍ଥରେ ଗ୍ରହଣ କଲେ ପଦ୍ୟକାବ୍ୟକୁ କବିତା ବା (Poetry) ଅର୍ଥରେ ଏବଂ ଗଦ୍ୟକାବ୍ୟକୁ (Prose Literature) ଅର୍ଥରେ ଗ୍ରହଣ କରିବା ମୋ ମତରେ ସମୀଚୀନ ହେବ । ଦୃଶ୍ୟକାବ୍ୟ ବା ନାଟକ (Drama) କେବଳ ଗଦ୍ୟମୟ ହେଲେ ମଧ୍ୟ କାବ୍ୟ ବା ସାହିତ୍ୟ (Literature) ଶ୍ରେଣୀଭୁକ୍ତ ହେବ । ପଦ୍ୟକୁ (Verse) ଏବଂ ଗଦ୍ୟକୁ (Prose) ଅର୍ଥରେ ବ୍ୟବହାର କରିବାହିଁ ଯୁକ୍ତିଯୁକ୍ତ । ପରିଭାଷାର ଅର୍ଥ

ପରିସ୍ଫୁଟ ନ ହେଲେ ଅର୍ଥଗ୍ରହଣରେ ଅସୁବିଧା ହୁଏ । କାବ୍ୟ ବା ସାହିତ୍ୟ ଗୋଟିଏ ବିଶିଷ୍ଟ ଲଳିତ ବା ସୁକୁମାର କଳା (Fine art) । ଜୀବନ ନିୟନ୍ତ୍ରଣ ବ୍ୟାପାରରେ ଏହାର ପ୍ରଭାବ ମନୁଷ୍ୟର ଦୁର୍ବଳ ହୃଦୟ ଉପରେ ପଡ଼ିଲେ କ୍ରମେ କ୍ରମେ ହୃଦୟର କର୍ଷଣ, ପୋଷଣ ଓ ସରସୀକରଣରେ ଏହା ପ୍ରଭୂତ ସହାୟତା କରେ । ଦୃଶ୍ୟକାବ୍ୟର କଥା ଟିକିଏ ସ୍ୱତନ୍ତ୍ର । ଅଶିକ୍ଷିତ, ଏପରିକି ନିରକ୍ଷର ଲୋକ ଦୃଶ୍ୟକାବ୍ୟର ଅଭିନୟ ଦେଖି ଗୋଟିଏ ନବୀନ ଜୀବନର ସଂସର୍ଗରେ ଆସିଲା ଭଳି ନବାୟମାନ ହୋଇଯାଏ । କମ୍ପନାତୁଳିକା ସାହାଯ୍ୟରେ ଚିତ୍ରିତ ମାନବହୃଦୟର ଛବି ତାହାର କଳ୍ପନାକୁ ଚକିତ, ବିସ୍ମିତ ଓ ତନ୍ମୟ କରିଦିଏ । ସେ ତାହାର ଭାବପ୍ରେମର ତରଙ୍ଗରେ ଅଭିଭୂତ ହୋଇଯାଏ ।

କିନ୍ତୁ ଖଣ୍ଡକବିତା ଓ ଗୀତିକବିତାର ପ୍ରଭାବ କ୍ରମେ କ୍ରମେ ଧୀରେ ଧୀରେ ଜୀବନକୁ ସଞ୍ଚାଳିତ କରେ । ଏହାର ପ୍ରଭାବ ଏପରି ଅଲକ୍ଷିତ ଭାବରେ ପ୍ରସାରଲାଭ କରେ ଯେ, ତାହାର ପରାକ୍ରମ ସହଜରେ ବୁଝି ହୁଏ ନାହିଁ । ଅପରନ୍ତୁ ମହାକାବ୍ୟ ଓ ଇତିହାସର ଉପନ୍ୟାସର ପ୍ରଭାବ ସହଜରେ ବୋଧଗମ୍ୟ ହୋଇପଡ଼େ । 'ଯତୋ ଧର୍ମସ୍ତତୋ ଜୟଃ' ଏ କଥାଟି ମହାଭାରତରେ କୁହାପି ନୀତିଶିକ୍ଷାରୂପରେ ଉଲ୍ଲେଖ ନ ଥିଲେହେଁ ଏହା ମହାଭାରତର ବାୟୁମଣ୍ଡଳର ପ୍ରଭାବରୁ ମନୁଷ୍ୟର ହୃଦୟଫଳକରେ ଅମରବର୍ଣ୍ଣରେ ଅଙ୍କିତ ହୋଇଗଲା ପରି ଲାଗେ । 'ଅତିଦର୍ପେ ହତା ଲଙ୍କା'—ଏ କଥାଟି କବିଗୁରୁ ଶ୍ରୀମୁଖରେ କହି ନାହାନ୍ତି ସତ୍ୟ, କିନ୍ତୁ ରାମାୟଣର ବାତାବରଣର ସତ୍ତା ଏହାକୁହିଁ କେନ୍ଦ୍ର କରି ସୃଷ୍ଟି ହୋଇ ପରି ଲାଗେ । କବିଙ୍କର କାଞ୍ଚୀ ପରଶରେ ଯେଉଁ ଇନ୍ଦ୍ରଜାଲର ସୃଷ୍ଟି ହୁଏ ପାଠକପାଠିକାମାନେ ସେଥିରେ ମନ୍ତ୍ରମୁଗ୍ଧ ହେଲା ପରି ସେ ଦେଶର ମାୟାପୁରୀର ବାସିନ୍ଦା ହୋଇ ପଡ଼ନ୍ତି—ସେ ଦେଶର ବାଣୀ, ସେ ଦେଶର ଠାଣି ଯୁଗପତ୍ ସେମାନଙ୍କୁ ମୋହିତ ଓ ସ୍ତମ୍ଭିତ କରିଦିଏ ।

ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ ଚିତ୍ରକଳାର ଆକର୍ଷଣ କେବଳ ଦର୍ଶନେନ୍ଦ୍ରିୟଗ୍ରାହ୍ୟ ଏବଂ ସଙ୍ଗୀତର କଳାନୈପୁଣ୍ୟ କେବଳ ଶ୍ରବଣେନ୍ଦ୍ରିୟଗ୍ରାହ୍ୟ;

କରୁ ଦୃଶ୍ୟକାବ୍ୟର ମାଧୁର୍ଯ୍ୟ ଯୁଗପତ୍ ଶ୍ରବଣ ଓ ନୟନକୁ ଆକର୍ଷଣ କରେ । ଏମାନେ ସମସ୍ତେ ଦର୍ଶନ ଓ ଶ୍ରବଣଦ୍ୱାରା ଗୃହୀତ ହେଲେହେଁ ଏମାନଙ୍କର ପ୍ରଭାବ ହୃଦୟକୁ ସ୍ପର୍ଶ କରେ ଓ ପ୍ରଭାବିତ କରେ । ପୁଣି ଗୀତିକାବ୍ୟ, ମହାକାବ୍ୟ ତଥା ଖଣ୍ଡକାବ୍ୟ ମୁଖ୍ୟତଃ ଶ୍ରୁତିବେଦ୍ୟ ହେଲେହେଁ ଏମାନଙ୍କର ଗୋଟିଏ ବିଶେଷତ୍ୱ ଏହି ଯେ ଭାବର ଗାମ୍ଭୀର୍ଯ୍ୟ ସଙ୍ଗେ ଭାଷାର ମାଧୁର୍ଯ୍ୟର ବିଚିତ୍ର ସମାବେଶ ସୃଷ୍ଟି କରି ଗୋଟିଏ ହୃଦୟ-ରଞ୍ଜନ ଛବି ଅଙ୍କନ କରିଦିଏ । ଭାବର ଅନୁପମ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ସଙ୍ଗରେ ଭାଷାର ସଙ୍ଗୀତମୟୀ ମାଧୁରୀର ଅନିର୍ବଚନୀୟ ମଧୁର ମିଳନ କେବଳ କାବ୍ୟକଳାରେହିଁ ସମ୍ଭବପର ହୁଏ । ଏତଦ୍ଦ୍ୱାରା ଏପରି ଏକ ଅପୂର୍ବ ରସର ସୃଷ୍ଟି ଓ ସ୍ଫୂର୍ତ୍ତି ସମ୍ପାଦିତ ହୁଏ, ତଦ୍ଦ୍ୱାରା ମନୁଷ୍ୟର ନୀରସ କର୍କଶ ମରୁବତ୍ ଶୁଷ୍କ ହୃଦୟ କ୍ରମେ ସରସ ଓ କର୍ଷଣୋପଯୋଗୀ ହୋଇଉଠେ । ପୁଣି ଯଥାରୀତି ଖନନ କର୍ଷିତ ହେଲେ, ହୃଦୟ-କେଦାରଟି ଅମୃତ ବୀଜବପନର ଅନୁକୂଳ ଉର୍ବରତା ପ୍ରାପ୍ତ ହୁଏ । ବୀଜବପନ, ଅଙ୍କୁରୋଦ୍ଭେଦ ପରେ ସୁବର୍ଣ୍ଣ ଶସ୍ୟସମ୍ଭାରର ଆଶା ମନରେ ଉଦୟ ହୁଏ । ଏହା ବହୁସମୟସାପେକ୍ଷ ବ୍ୟାପାର । ଚୌରାଶୀ ଲକ୍ଷ ଯୋନି ଭ୍ରମଣ କରି କ୍ରମବିକାଶର ଆବହମାନ ସ୍ରୋତରେ ଭାସି ଭାସି ଦୁର୍ଲଭ ମନୁଷ୍ୟଜନ୍ମ ପାଇ ପୁଣି କେତେ ଜନ୍ମ ଯେ ଏହି କୃଷି-କର୍ମରେ ଲାଗିଲେ ପରେ ହେମନ୍ତର ହେମାୟମାନ ପକ୍ୱଶସ୍ୟସମ୍ଭାର ଉପଭୋଗର ଉପଯୋଗୀ ହୁଏ ଭାବିଲେ ବେଳକୁ ପିଲେଇ ପାଣି ହୋଇଯିବ । 'ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ ।' ଅନ୍ୟ ଉପାୟ ନାହିଁ । ତେବେ ଏହା ଆଶାପ୍ରଦ ଯେ, ଏହି ଆଧ୍ୟାତ୍ମକର୍ଷଣର ପ୍ରଥମ ସ୍ତରରେ ପ୍ରେମାନନ୍ଦର ଅଳକାନନ୍ଦାଧାରା ପ୍ରବାହିତ ହୁଏ । ନୀରସ ପ୍ରାଣରେ ଆଶାର ସଞ୍ଚାର କରି କଳକଣ୍ଠ କୋକିଳର ଲଳିତ ପଞ୍ଚମତାନ କୃଷକର କର୍ଣ୍ଣରସାୟନ ହୋଇଥାଏ । ଆନନ୍ଦବ୍ରହ୍ମଙ୍କର ଉପାସନାର ଶୁଭ ଅଧିବାସଠାରୁ ଆରମ୍ଭ କରି ସଦା ସର୍ବଦା ପ୍ରତି ସ୍ତରରେ ପ୍ରେମାନନ୍ଦତରଙ୍ଗ ଖେଳିଯାଏ । ଆଦି, ଅନ୍ତ, ମଧ୍ୟ—ସର୍ବତ୍ର ଆନନ୍ଦ, ସର୍ବତ୍ର ମଧୁର । ଅବସାଦର ଲେଶ ନାହିଁ—ମଧୁରଂ 'ମଧୁରଂ ସର୍ବତ୍ର ମଧୁରଂ' । ବିଲ୍ୱମଙ୍ଗଳଙ୍କ ଭାଷାରେ:—

ମଧୁରଂ ମଧୁରଂ ବପୁରସ୍ୟ ବିଭୋର୍ମଧୁରଂ ମଧୁରଂ ବଦନଂ ମଧୁରଂ ।
ମଧୁଗନ୍ଧି ମୃଦୁସ୍ମିତ ମେତଦହୋ ମଧୁରଂ ମଧୁରଂ ମଧୁରଂ ମଧୁରଂ ।
( କବିକର୍ଣ୍ଣାମୃତମ୍ )

ଏ ମାଧୁରୀ କିଅଣ ଏକାଦିନକେ ଆସ୍ୱାଦନ କରି ହେବ ? ଏହାହିଁ ହେଲା ପରମ ଓ ଚରମ ଲକ୍ଷ୍ୟ—ଏହା ସବୁବେଳେ ହୃଦୟରେ ଜାଗ୍ରତ୍ ରଖି ଲକ୍ଷ୍ୟଭ୍ରଷ୍ଟ ନ ହୋଇ ଗନ୍ତବ୍ୟ ପଥରେ ଧୀରେ ଧୀରେ ଅଗ୍ରସର ହେବାର କଥା । ଯେପରି ପିତ୍ତାଧିକ୍ୟରୁ ମିଶ୍ରୀ ପର୍ଯ୍ୟନ୍ତ ରସନାକୁ ତିକ୍ତ ଲାଗେ—ତେବେ ବାରମ୍ବାର ମିଶ୍ରୀ ଆସ୍ୱାଦନ କରୁଁ କରୁଁ ପିତ୍ତଦୋଷ କ୍ରମେ କ୍ରମେ ରସନାରୁ କଟିଯାଇ ମିଶ୍ରୀର ସ୍ୱାଭାବିକ ମିଷ୍ଟାସ୍ୱାଦ ଲାଭ ହୁଏ । ସେହିପରି ଜୀବ ଅନାଦି କାଳରୁ ବହିର୍ମୁଖ ହୋଇ ଭବରୋଗପ୍ରପୀଡ଼ିତ—ତା'ର ପିତ୍ତବିକାରର ଆତିଶଯ୍ୟ ହେତୁ ସେ ଶ୍ରେୟକୁ ତିକ୍ତବତ୍ ପରିତ୍ୟାଗ କରି ଆପାତମଧୁର ପ୍ରେୟକୁ ନେଇ ବିଭୋର ହୋଇଅଛି—ପୁଣି ଷଡ୍‌ରିପୁର ଉତ୍ପୀଡ଼ନରେ ସଦାଜର୍ଜରିତ ଓ ହିଂସାପନ୍ନାଳରେ ସର୍ବଦା ମ୍ରିୟମାଣ ଓ ମାୟାପିଶାଚୀର କୁହକରେ ଭୂଲି ଭୁତାଭିନ-ବେଶରେ ଘୋର ମୁହ୍ୟମାନ;—ଚୈତନ୍ୟର ସନ୍ଧାନ ନାହିଁ । ସ୍ୱରୂପ ଉପଲବ୍ଧିର ପ୍ରସଙ୍ଗରେ ଘୋର ଅରୁଚି । ଏପରି ସ୍ଥଳରେ ବାରମ୍ବାର ଭାବ୍ୟାନନ୍ଦରୂପ କନ୍ଦପଣ୍ଡ ପୁନଃପୁନଃ ପିଇଲେ ଯେ ଆଶୁ ଫଳପ୍ରଦ ହେବ, ତେମନ୍ତ ନୁହେଁ । ତେବେ ତାହାର ତାହାହିଁ ଏକମାତ୍ର ଅବ୍ୟର୍ଥ ମହୌଷଧି । ଏହି କୁଳଶକଠୋର କ୍ଲେଶୋଲାଘାତରେ ଅମୋଘ ବିଶଲ୍ୟକରଣୀ—ଏହି ସୁଯୋଗ ସମଗ୍ର ରେ ଗତ୍ୟନ୍ତର ନ ଥିବାରୁ ଏହି ଏକହିଁ ବ୍ୟବସ୍ଥା ନିଦାନଶାସ୍ତ୍ରମନ୍ଥନ କରି ବିବେକୀମାନେ ଠିକ୍ କଲେ । ଧୈର୍ଯ୍ୟର ଦରକାର, ସହିଷ୍ଣୁତାର ଦରକାର, ଅଧ୍ୟବସାୟ ଓ ଏକାଗ୍ରତାର ଦରକାର ।

ଗ୍ରାମର ପୁଷ୍କରିଣୀର ପ୍ରସ୍ତରବନ୍ଧା ଘାଟରେ ନିତି ନିତି ମୃଣ୍ମୟ କଳସୀ ଥୋଇ ଥୋଇ ପ୍ରସ୍ତର ଉପରିଭାଗ କ୍ରମେ ଘୋରି ହୋଇ ହୋଇ କେତେଟି କଳସୀ ରହିବା ଭଳି ଗର୍ତ୍ତ ଆପଣା ଛିଏଁ ହୋଇଯାଏ ।

ଏହା ଭାବିବାର କଥା । ମୃଣ୍ମୟ କଳସୀଟା ଚିକଏ ଜୋରରେ ପଥର ଦେହରେ ବାଜିଗଲେ ଭାଙ୍ଗି ଚୂରମାର ହୋଇ ଯିବାର କଥା—ତାହାର ସ୍ପର୍ଶରେ ପଥରଦେହ କ୍ରମେ କ୍ରମେ ଗୋବ ହୋଇଯାଏ । ସ୍ଥାନେ ସ୍ଥାନେ ବେଶ ଗଭୀର ଗର୍ତ୍ତ ହୋଇ ଯାଇଥାଏ । ଏହା ଖୁବ ଆଶ୍ଚର୍ଯ୍ୟଜନକ, ଏମନ୍ତ କି ଅସମ୍ଭବ ବୋଧ ହେଲେହେଁ ଏହାହିଁ ନିତ୍ୟନୈମିତ୍ତିକ ପ୍ରତ୍ୟକ୍ଷ ଘଟଣା । ଏହା କେବଳ ଅଭ୍ୟାସଯୋଗ ଦ୍ୱାରା ସମ୍ଭବପର ହୁଏ । ସେହିପରି ଘନଘନ କାବ୍ୟାନୁଶୀଳନ ଫଳରେ, ମୁହୁର୍ମୁହୁଃ କାବ୍ୟରସାସ୍ୱାଦନ ବଳରେ, ବାରମ୍ବାର ଦୃଶ୍ୟକାବ୍ୟାଭିନୟ-ମଦିରା ପାନ କଲେ, ମନୁଷ୍ୟର ହୃଦୟ ଦୃଢ଼ଶକଠିନ ହେଲେ ସୁଦ୍ଧା କାଳକ୍ରମେ ଧୀରେ ଧୀରେ ବଦଳି ନ ପଡ଼ିବ କାହିଁକି ? ନୀରସ ମରୁତୁଲ୍ୟ ହୃଦୟକ୍ଷେତ୍ର ସେ ସୁଧାସିଞ୍ଚନବଳରେ କ୍ରମେ କ୍ରମେ ସରସ, ଉର୍ବର ବା ନ ହେବ କାହିଁକି ? କିନ୍ତୁ କିପରି ହେବ, କି ଉପାୟରେ ବା ହେବ, ତାହା ସ୍ଥିର କରିବାକୁ ସାହସ ପାଉ ନାହିଁ । କଥାଟା ତ ଏତେ ସହଜ ନୁହେଁ ।

ମନେ କର, ଆଜି ରାମହୃଦୟକ୍ଷ୍ୟୟା ବୈଦେହୀ ସତୀଙ୍କୁ ଅଗ୍ରଜ ଆଜ୍ଞାବହ ସୌମିତ୍ରି ଭାଗୀରଥୀତୀର-କାନନରେ ବିସର୍ଜନ କରି କିପରି ପଥମନେ ରଥ ବାହୁଡ଼ାଇଲେ—ଏହି କବିତାଟି ଆଦ୍ୟପ୍ରାନ୍ତ ପାଠ କଲ । ନିଶ୍ଚୟ ନିଶ୍ଚୟ ସତୀଙ୍କ କରୁଣ ବିଳାପରେ ତୁମ ହୃଦୟ ଟିକିଏ ହେଲେ ଦ୍ରବୀଭୂତ ହୋଇଥିବ । "ଚରଣପଦ୍ମତଳ ଦୟାସାଗର, ସତେ କି ଏ ଦାସୀକି କଲ ଅନ୍ତର ?" ପ୍ରଭୃତି ସୀତାଙ୍କ କରୁଣୋକ୍ତି ପଢ଼ିବାବେଳେ ତୁମର ନେତ୍ରଦ୍ୱୟ ନିଶ୍ଚୟ ନିଶ୍ଚୟ ଅଶ୍ରୁଭାରାକ୍ରାନ୍ତ ହୋଇ ଆସିଥିବ । ପୁଣି ବନେ ବସି ନନ୍ଦଙ୍କର ଅନ୍ତିମ-ନିବେଦନ-ଲିପି—"ତାତ ଜୀବନ୍ମୁକ୍ତ ସବୁଛି ମୋହର, ଅନ୍ତିମେ ବନ୍ଦିଲି ତବ ଶ୍ରୀପଦ୍ମର" ପ୍ରଭୃତି ପଂକ୍ତି କେତୋଟି ପଢ଼ୁଁ ପଢ଼ୁଁ ନିଶ୍ଚୟ ତୁମର ଚକ୍ଷୁରୁ ଟୋପେ ଦି'ଟୋପା ଅଶ୍ରୁ ପଡ଼ିଥିବ । ପୁଣି କିଛିଦିନ ପରେ ସେକ୍ସପିଅରଙ୍କ ଲିୟର କିମ୍ବା ଓଥେଲୋ ଅଭିନୟ ଦେଖିବାର ସୁଯୋଗ ମିଳିଗଲା । ଗୋଟାଏ ନରପିଶାଚର କବଳରେ ପଡ଼ି ମହାମନା ରାଜବିଶ୍ୱାସୀ ଓଥେଲୋ ଯେତେବେଳେ ନିଜର

ପ୍ରାଣାଧିକା ପ୍ରିୟତମାକୁ ତଣ୍ଟି ଚିପି ମାରି ପକାଇଲେ ଦ୍ୟମଡ଼େସେମୀ ( Desdemona ) ଙ୍କୁ ତାଙ୍କର ସଖୀ ପଚାରିଲେ, "ତୁମର ଏ ଦଶା କିଏ କଲା ?" ସେ ତାଙ୍କ ଜୀବନର ସର୍ବଶେଷ ଶକ୍ତିଟ୍ୟାରେ କହିଲେ, "ମୁଁ ନିଜେ କରିଛି ।" ଏହା କହି ସେ ଶେଷ ବିଦାୟ ନେଲେ । ହଠାତ୍ ମୋହ ଭଞ୍ଜନ ହେବାରୁ ଓଥେଲୋ ମଧ୍ୟ ପ୍ରିୟତମାଙ୍କ ଅନୁଗମନ କଲେ । ତୁମର ହୃଦୟ କଣ ବଜ୍ରଠାରୁ କଠିନ ଯେ ତୁମେ ଧୀର-ସ୍ଥିରଚିତ୍ତରେ ଏ ସବୁ ଦେଖି, ଟିକିଏ ହେଲେ ବିଚଳିତ ହେବ ନାହିଁ ? —କି ଟୋପାଏ ଲୁହ ତୁମ ଆଖିରେ ଦେଖାଯିବ ନାହିଁ ? ଏହା ମୁଁ ବିଶ୍ୱାସ କରି ପାରିବି ନାହିଁ ।

ଲିୟର ଯେତେବେଳେ କର୍ଡ଼େଲିଆଙ୍କର ମୃତଦେହକୁ କାଖରେ ପକାଇ ଉପସ୍ଥିତ ହୋଇ ଏପରି କର୍ଡ଼େଲିଆଙ୍କର ମୃତ୍ୟୁ ଅସମ୍ଭବ ମନେ କରି ପାଗଳାମି ବୁଦ୍ଧିର ଆତିଶଯ୍ୟରୁ ଭରି ଆନନ୍ଦିତ ହୋଇ ଉଠିଲେ । କିନ୍ତୁ ଆନନ୍ଦାତିଶଯ୍ୟ ଅସହ୍ୟ ହୋଇ ପଡ଼ିବାରୁ ତାଙ୍କର ହୃଦୟଗ୍ରନ୍ଥି ହଠାତ୍ ଛିନ୍ନ ହୋଇଗଲା ଓ ସେ ପ୍ରିୟତମା କନ୍ୟାଙ୍କର ଅନୁଗମନ କରି ବିଦାୟ ନେଲେ । ତୁମର ହୃଦୟକ୍ଷେତ୍ର ଯେତେ ଟାଣ ହେଉ ନା କାହିଁକି, ସେଥିରେ କିଛି ନା କିଛି ଗାର ପଡ଼ିଥିବାର ସୁନିଶ୍ଚିତ । ଏହିପରି ଗାର ଉପରେ ଗାର ଦେଇ ଶୁଭ ଅକ୍ଷୟ ତୃତୀୟାକୁ ଅପେକ୍ଷା କରି ବସିଥାଅ । ଶୁଭ ମୁହୂର୍ତ୍ତରେ ମାହେନ୍ଦ୍ର ଯୋଗ ପାଇ ଅମୃତ ବେଳାରେ ଅକ୍ଷୟ ବୀଜର ବପନବ୍ୟବସ୍ଥା ହେଉ । ପରେ ବଛବଛି, ବିହୁଡ଼ା, ଜାଅଁଳ ଦେବା ପ୍ରଭୃତି ପରେ ପରେ ହେବ । ସବୁ ବେଳକାଳ ଉଣ୍ଡି କରିଯିବା ଉଚିତ । ଅବଶ୍ୟ ପ୍ରଭୂତ ବାଧା-ବିଘ୍ନ ଅଛି । ଅକ୍ଷୟବୀଜ ତ ଆଉ ନଷ୍ଟ ହେବାର ନୁହେ । ବିଳମ୍ବେ କାର୍ଯ୍ୟସିଦ୍ଧି—ହେଲେ ହେଉ, ଧୈର୍ଯ୍ୟ ଧରିବା ଦରକାର ।

ମୋର କହିବାର ଅଭିପ୍ରାୟ ଏହି ଯେ, ଯେତେବେଳେ କୌଣସି କାବ୍ୟାନୁଶୀଳନ, ଅଭିନୟଦର୍ଶନ କିମ୍ବା ସଙ୍ଗୀତର ରସାସ୍ୱାଦନ ଆମ୍ଭମାନଙ୍କ ହୃଦୟକୁ ସ୍ପର୍ଶ କରେ, ସେହି ଭାବର ଉନ୍ମାଦନା ହୃଦୟ

ଉପରେ ଗୋଟାଏ ଦାଗ ବା ଗାର ପକାଇ ଦିଏ । ତାହା ଅଭି ଲିଭେ ନାହିଁ । ତାହା ସଂସ୍କାରରୂପରେ ଅତ୍ମାର ସଙ୍ଗେ ସଙ୍ଗେ ଏଜନ୍ମରୁ ଜନ୍ମାନ୍ତରକୁ ଗତି କରେ । ଏହା ସର୍ବବାଦୀସମ୍ମତ । ଲୋକେ କହନ୍ତି—"ପୂର୍ବଜନ୍ମାର୍ଜିତା ବିଦ୍ୟା ଅଗ୍ରେ ଧାବତି ଧାବତି" । ତାହା ପାଇଁଯାଏ ପାଠ ପରି ପରଜନ୍ମରେ ଅନାୟାସରେ ମନେ ପଡ଼ିଯାଏ । ତେଣୁ ସଂସ୍କାରଭେଦଗତ ପାର୍ଥକ୍ୟରୁ ଜଣେ ଅବାଲ୍ୟ ମେଧାବୀ, ଜଣେ ଆଜନ୍ମ ଗଣ୍ଡମୂର୍ଖ, ଜଣେ ସଙ୍ଗୀତପ୍ରବଣ, ଜଣେ କବିପ୍ରତିଭାଶାଳୀ ଓ ଅନ୍ୟ ଜଣେ ଚିତ୍ରକଳାବିଳାସୀ । ଏହିପରି ପ୍ରତ୍ୟେକ ଜନ୍ତୁ ନା କିଛି ସଂସ୍କାର ନେଇ ଜନ୍ମଗ୍ରହଣ କରନ୍ତି । "ବାସାଂସି ଜୀର୍ଣ୍ଣାନି ଯଥା ବିହାୟ, ନବାନି ଗୃହ୍ଣାତି ନରୋଽପରାଣି ।" ତେଣୁ ଜୀର୍ଣ୍ଣବସ୍ତ୍ର ପରି ମନୁଷ୍ୟ ଦେହତ୍ୟାଗ କରି ଅସିଲାବେଳେ, ତାହାର ଅମର ଅତ୍ମା କେତେଗୁଡ଼ିଏ ପୂର୍ବଜନ୍ମାର୍ଜିତ ସଂସ୍କାର ନେଇ ପୁଣି ଭବଲୀଳା ଆରମ୍ଭ କରିଥାଏ । ହୃଦୟକ୍ଷେତ୍ରରେ ସେହି ସଂସ୍କାରଗୁଡ଼ିକ ସାଧ୍ୟ ଭାବରେ ଅପ୍ରକଟ ଅବସ୍ଥାରେ ସୁପ୍ତ ଥାଆନ୍ତି । ଏ ଜନ୍ମର କର୍ଷଣ, ଅନୁଶୀଳନ ପ୍ରଭୃତିଦ୍ୱାରା ସେଗୁଡ଼ିକ ପ୍ରକଟ ହୋଇପଡ଼ନ୍ତି ମାତ୍ର । ହୃଦୟକ୍ଷେତ୍ରର କର୍ଷଣ ବା ଅନୁଶୀଳନ ପୂର୍ବଜନ୍ମମାନଙ୍କରେ ଯେତେଦୂର ହୋଇ ସାରିଥାଏ, ତାହାର ପରବର୍ତ୍ତୀ ଅବସ୍ଥାରୁ ପୁଣି କର୍ଷଣ ଓ ଅନୁଶୀଳନର ବ୍ୟବସ୍ଥା ହୁଏ । ଏହିପରି ଜନ୍ମଜନ୍ମାନ୍ତର ବିତିଗଲେ ମଧ ସତ ନାହିଁ । କାରଣ ସେହି ସୁନେଲି ଫସଲଟା ଅତି ଲୋଭନୀୟ ଓ ଜୀବର ଏକାନ୍ତ ବାଞ୍ଛନୀୟ—ଚରମ ଓ ପରମ ଲକ୍ଷ୍ୟ । ମହା-ପ୍ରେମାନନ୍ଦମୟ ଅମୃତ ରସାବଳୀ ପରି ।

ପରିଶେଷରେ ମୋର ଏତିକି ବକ୍ତବ୍ୟ ଯେ, ସତ୍‌ସାହିତ୍ୟଚର୍ଚ୍ଚାର ଫଳରେ ପାଠକର ହୃଦୟ ଗୋଟିଏ ମହାଭାବତରଙ୍ଗରେ ବିକ୍ଷେପଭାବରେ ଆଲୋଡ଼ିତ ଓ ଆନ୍ଦୋଳିତ ହେଲେ, ସେହି ଆଲୋଡ଼ନର ଚିହ୍ନସ୍ୱରୂପ ହୃଦୟଉପରେ ଗୋଟାଏ ଦାଗ ପଡ଼େ—ତାହା ସଂସ୍କାରରୂପରେ ଅତ୍ମାର ସଙ୍ଗେ ସଙ୍ଗେ ଜନ୍ମଜନ୍ମାନ୍ତରକୁ ଗତି କରେ । ମୃତ୍ୟୁର ସଙ୍ଗେ ସଙ୍ଗେ ଜୀବ ତାହାର

ଧନ ଜନ ପରିଜନ ଏମନ୍ତ କି ନିଜର ଅତିପ୍ରିୟ ପଞ୍ଚଭୌତିକ ଦେହକୁ ମଧ୍ୟ ଛାଡ଼ିଯିବାକୁ ବାଧ୍ୟ ହୁଏ—କେହି ତାହା ସଙ୍ଗରେ ଯାଆନ୍ତି ନାହିଁ—କେବଳ ସତ୍‌ସାହିତ୍ୟଲବ୍‌ଧ ଉନ୍ମାଦନାର ପ୍ରଭାବ ସଂସ୍କାରରୂପରେ ଆତ୍ମା ବା ହୃଦୟରେ ନିହିତ ରହି ଏ ଜନ୍ମରୁ ଅନ୍ୟ ଜନ୍ମକୁ ଗତି କରେ। ଉକ୍ତ ସଂସ୍କାରଗୁଡ଼ିକ ଆତ୍ମା ବା ହୃଦୟର ସାହିତ୍ୟ ବା ସଙ୍ଗ କଦାପି ପରିତ୍ୟାଗ କରନ୍ତି ନାହିଁ। ଏହାହିଁ ସାହିତ୍ୟନାମର ସାର୍ଥକତା। ସୁତରାଂ ସତ୍ ସାହିତ୍ୟର ଆଦର୍ଶ ଖୁବ ଉଚ୍ଚ ଓ ମହାନ୍ ହେବା ଉଚିତ। ସାହିତ୍ୟହିଁ ତ ମନୁଷ୍ୟାତ୍ମାର ଚିରସଙ୍ଗୀ ଓ ପରମ ସୁହୃଦ୍; ତେଣୁ ସତ୍ ସାହିତ୍ୟ କେବଳ ନୀରସ ଶୁଷ୍କଜ୍ଞାନର ସମଷ୍ଟି ନୁହେ କିମ୍ବା ବୈଜ୍ଞାନିକ ତଥ୍ୟାବଳୀ କିମ୍ବା ଦାର୍ଶନିକ ତତ୍ତ୍ୱସମୂହର ସମବାୟ ମାତ୍ର ନୁହେ। ଏହା ସରସ, ସୁନ୍ଦର ଓ ଜୀବନୀଶକ୍ତିର ଏକମାତ୍ର ଆଧାର। ସତ୍ ସାହିତ୍ୟ ସତ୍ୟ ଶିବ ସୁନ୍ଦରଙ୍କ ହୃଦୟରଞ୍ଜନକାରୀ ନିଖିଳ ଚିତ୍ତ ଉନ୍ମାଦନ-କାରୀ ଲାବଣ୍ୟ ପ୍ରତିମା।

---

## କାବ୍ୟର ମୌଳିକତା, ସମାଲୋଚନା ଓ ପଶ୍ଚିମ୍ୟାନୁବାଦ

ଶ୍ୱେତଦ୍ୱୀପର ସୁବିଖ୍ୟାତ ନାଟ୍ୟକାର ସେକ୍ସପିୟରଙ୍କ ହେମଲେଟ୍ (Hamlet) ନାମା ଦୃଶ୍ୟକାବ୍ୟର କଥା ସମସ୍ତେ ଶୁଣିଥିବେ ଓ ଅନେକେ ପଢ଼ିଥିବେ ଏବଂ କେହି କେହି ନାଟକଟିର ଅନବଦ୍ୟ ଶିଳ୍ପନୈପୁଣ୍ୟ ଓ ଚରିତ୍ରବିଶ୍ଳେଷଣ ସୂକ୍ଷ୍ମଭାବରେ ହୃଦୟଙ୍ଗମ କରି ମୋହିତ ହୋଇଥିବେ। ତାଙ୍କର ଚାରି ଗୋଟି ଉଚ୍ଚ ଅଙ୍ଗ ବିଷାଦାତ୍ମକ ନାଟକ (Tragedy) ମଧ୍ୟରୁ ହେମଲେଟ ଅନ୍ୟତମ। କାହାରି କାହାରି ମତରେ ବିଶ୍ୱବରେଣ୍ୟ ନାଟ୍ୟକାରଙ୍କ ଅଦ୍ଭୁତ କଳାକୌଶଳ ଏହି ଦୃଶ୍ୟକାବ୍ୟଟିର ରଚନାରେ ମୌଳିକତାର ସର୍ବଶେଷ ସୀମା ସ୍ପର୍ଶ କରିଥିଲା। ତାଙ୍କର ଅଲୌକିକ କବିପ୍ରତିଭାରୂପୀ କଳ୍ପନା ହିମାଳୟର ଏହାହିଁ ଅଭ୍ରଂକଷ କାଞ୍ଚନଜଙ୍ଘା।

କିନ୍ତୁ ଗୋଟିଏ କଥା ମନେ ରଖିବାକୁ ହେବ ଯେ ନାଟ୍ୟକାର ହିସାବରେ ତାଙ୍କର ପ୍ରାୟ ସମସ୍ତ ନାଟକ ରଚନାରେ ସେ କଥାବସ୍ତୁଟି (plot) ଭଣା ଅଧିକରେ ଅନ୍ୟଠାରୁ ଗ୍ରହଣ କରିଥାଆନ୍ତି। ମାତ୍ର ହେମଲେଟରେ କେବଳ କଥାବସ୍ତୁ ନୁହେଁ, ସମଗ୍ର ନାଟକଟିର ଗୋଟିଏ ପୁରାତନ ସଂସ୍କରଣର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖି ସେଥିରୁ ଆମୂଳଚୂଳ ସମସ୍ତ ଗ୍ରହଣ କରିଥିଲେ ବୋଲି କହିଲେ ଚଳେ। କେବଳ କେତୋଟି ଦୃଶ୍ୟ ଓ କେତୋଟି ଭୂମିକାର ନୂତନ ସୃଷ୍ଟି କରିଥିଲେ ଓ କବିତ୍ୱର ଯାଦୁକରୀ ଛିଟାଏ ନବକଳେବର ଦେବାର ଚେଷ୍ଟା କରିଥିଲେ ମାତ୍ର। ତାଙ୍କର ଐତିହାସିକ ନାଟକାବଳୀରେ ବିଶେଷତଃ ତାଙ୍କର ରୋମକ-ଇତିହାସ-ସମ୍ବଳିତ ନାଟକମାନଙ୍କରେ ସେ କଥାବସ୍ତୁ ଛଡ଼ା ପରସ୍ପର କଥୋପକଥନର ଭାଷା ମଧ୍ୟ ଅପହରଣ କରି ନିଜ କବିକୃତିର ସମୃଦ୍ଧି ସମ୍ପାଦନ କରିଅଛନ୍ତି, ଭାବ, ଭାଷା ଓ ଉପଜୀବ୍ୟ କଥାବସ୍ତୁ ପର୍ଯ୍ୟନ୍ତ ଚୋରି କରି ବିଶ୍ୱଜଗତରେ ବରେଣ୍ୟ କବିମାନଙ୍କ ମଧ୍ୟରେ ଉଚ୍ଚତମ ସ୍ଥାନ ଅଧିକାର କରିଅଛନ୍ତି।

"ଚୌର୍ଯ୍ୟବିଦ୍ୟା, ମହାବିଦ୍ୟା, ସର୍ବବିଦ୍ୟା ସାର" । ନେଇ ଅଣି ଥୋଇ ଜାଣିଲେ ଚୌର୍ଯ୍ୟବିଦ୍ୟା ପରି ଲାଭବାନ୍ ବ୍ୟବସାୟ ଆଉ ନାହିଁ ; ତେଣୁ ପ୍ରାଚୀନକାଳର ସ୍ପାର୍ଟାନଗରୀରେ ଚୋରର ଚୌର୍ଯ୍ୟବୃତ୍ତି ଅଭିନନ୍ଦିତ ବୋଲି ବିବେଚିତ ହେଉଥିଲା । ଏ କଥା ସେ ଯେପରି ହୃଦୟଙ୍ଗମ କରିଥିଲେ, ବଙ୍ଗାଳ କାବ୍ୟଜଗତରେ ସେପରି ଚୌରଚୂଡ଼ାମଣି ଆଉ କାହିଁ ନ ଥିଲେ । ଜନ୍ମକାଳରୁ ଚୌର୍ଯ୍ୟବିଦ୍ୟା ତାଙ୍କର ଅସ୍ଥିମଜ୍ଜାଗତ ଥିଲାପରି ବୋଧ ହୁଏ । ସତେ ଯେପରି କି ସେ ଚୋରଙ୍କ କଳା ଘୋର ମୂଳା ନକ୍ଷତ୍ରରେ ଜନ୍ମଗ୍ରହଣ କରିଥିଲେ । ସେ ଯଦି ଯୌବନର ପ୍ରାରମ୍ଭରେ ସ୍ଥାନୀୟ ଭୂମ୍ୟଧିକାରୀଙ୍କର ସୁରକ୍ଷିତ ଉଦ୍ୟାନରୁ ହରିଣ-ହରଣରୂପ ଅପରାଧରେ ଅଭିଯୁକ୍ତ ହୋଇ ପ୍ରାଣଭୟରେ ଜନ୍ମଭୂମି ପରିତ୍ୟାଗ କରି ପାନସ୍ଥାନ ନିରାଶ୍ରୟଭାବରେ ସହରସ୍ଥ ରଙ୍ଗମଞ୍ଚରେ ଅଭିନେତାଙ୍କ ଶରଣପ୍ରାର୍ଥୀ ହୋଇ ନ ଥାଆନ୍ତେ, ତେବେ ବାଣୀକୁଞ୍ଜର ଗୋଟିଏ କଳକଣ୍ଠ କୋକିଳର ପଞ୍ଚମ ରାଗିଣୀରୁ ବିଶ୍ୱଜଗତ୍ ବଞ୍ଚିତ ହୋଇଥାଆନ୍ତା । ସେ ରଙ୍ଗମଞ୍ଚର ତାତ୍କାଳିକ ଅଧିନେତାଙ୍କ କୃଷ୍ଣାଙ୍ଗ ଶ୍ରେଷ୍ଠ ବଦାନ୍ୟତାକୁ ସାଦରେ ବରଣ କରି ଅଭିନୟଦର୍ଶକ ଧନାଢ଼୍ୟ ବ୍ୟକ୍ତିମାନଙ୍କର ଅଶ୍ୱ-ରକ୍ଷଣାବେକ୍ଷଣ କର୍ମରେ ନିଯୁକ୍ତ ହୋଇ ରଙ୍ଗମଞ୍ଚର ଅନୁକୂଳ ବାତାବରଣର ସଂସ୍ପର୍ଶରେ ପ୍ରବେଶଲାଭ କଲେ । କୌତୂହଳାକ୍ରାନ୍ତ ହେଲେହେଁ ମଧ୍ୟ ଭିତରସ୍ଥ ଅଭିନୟ ଦେଖିବାର ସୌଭାଗ୍ୟ ତାଙ୍କୁ ମିଳି ନ ଥିଲା । ଏହାର ବହୁପରେ ସେ ଥରେ ହେମଲେଟ୍‌ଙ୍କ ପିତାଙ୍କର ପ୍ରେତାତ୍ମାର ଭୂମିକାରେ ଅବତୀର୍ଣ୍ଣ ହୋଇ ହେହି ସାମାନ୍ୟ ଅଭିନୟଟିରେ ଯୋଗ ଦେଇଥିଲେ । ବୋଧହୁଏ କୌଣସି କୁଶୀଳବର ଆକସ୍ମିକ ଅନୁପସ୍ଥିତିରେ ଲୋକାଭାବରୁ ଜୀବନ୍ତ-ଭୂତସନ୍ନିଭ ନଗଣ୍ୟ ଅଶ୍ୱରକ୍ଷକଙ୍କୁ ହେମଲେଟ୍ ନାଟକର ଭୂତଭୂମିକାରେ ଉପସ୍ଥାପିତ କରାଇ ଯେନ ତେନ ପ୍ରକାରେଣ ଅଭିନୟକାର୍ଯ୍ୟ ଚଳାଇ ନେଇଥିବେ । ରାମାୟଣର କନକ-କୁରଙ୍ଗର ଭୂମିକାରେ ଜୀବନରେ ଥରେ ମାତ୍ର ଅବତୀର୍ଣ୍ଣ ହୋଇ ଧରାକୁ ସର ମଣିବାର ଲୋକ କଥଣ ନାହାନ୍ତି ? ଯାହାହେଉ ସେ ଯେ ଦିନେ ବିଶାଳ ବିଶ୍ୱଜଗତରେ

ନାଟ୍ୟକାରଚୂଡ଼ାମଣିଙ୍କ ମଧ୍ୟରେ ଗୋଟିଏ ବଣିକ୍ ଅସନ ଅଳଙ୍କୃତ କରି ବିଶ୍ୱର ନମସ୍ୟ ହେବେ, ସେ କଥା କଅଣ ସେତେବେଳେ କେହି କଳ୍ପନା କରି ପାରିଥିଲେ ? ଏକଥା ଅବଶ୍ୟ ନିଃସଙ୍କୋଚ ଅନୁମାନ କରାଯାଇ ପାରେ, ସେ ଯେତେବେଳେ ତାଙ୍କର କବିପ୍ରତିଭାକୁ ଖୋଲଅଣା ସାଫଲ୍ୟମଣ୍ଡିତ କରି ଦିଗ୍‌ବିଜୟୀବେଶରେ ରଙ୍ଗମଞ୍ଚରୁ ଅବସର ଗ୍ରହଣ କରି ଜନନୀ-ଜନ୍ମଭୂମିଙ୍କ ସ୍ନେହମୟ କୋଳରେ ଅନ୍ତିମ ଶୟନର ଆଶା ପୋଷଣ କରି ବାହୁଡ଼ିଥିଲେ, ସେତେବେଳେ ସେ ନିଶ୍ଚୟ ତାଙ୍କର ସ୍ୱଦେଶତ୍ୟାଗର ପ୍ରଥମ ଦିନ ଓ ତଦାନୁଷଙ୍ଗିକ ଚୌର୍ଯ୍ୟାପରାଧ ଏବଂ ତୁଏ ତ, ହେମଲେଟଙ୍କ ପିତାଙ୍କ ପ୍ରେତାତ୍ମାରୂପେ ରଙ୍ଗମଞ୍ଚର ଅଭିନୟରେ ସର୍ବପ୍ରଥମ ଯୋଗ ଦେବାର ଦିନକୁ ଗଭୀର କୃତଜ୍ଞତାଜ୍ଞାପନପୂର୍ବକ ସ୍ମରଣ କରୁଥିବେ ।

ତାଙ୍କର ଏହି ଶଂସିତ ଚୌର୍ଯ୍ୟକଳାରେ ଜନ୍ମନିବନ୍ଧନ ତାଙ୍କର ସ୍ୱଭାବସିଦ୍ଧ ଅପହରଣବୃତ୍ତି ବିଶ୍ୱଜଗତର ନାଟ୍ୟସାହିତ୍ୟକୁ ଅନ୍ତତଃ ଦୁଇଟି ପ୍ରଣାଳୀରେ ଚିରଋଣୀ କରି ରଖିଛି । ପ୍ରଥମତଃ ସେ ହରିଣ ଚୋର କରିବା ଅପରାଧରେ ଅଭିଯୁକ୍ତ ହୋଇ ସ୍ୱଗୃହ ତ୍ୟାଗ କରି ନ ଥିଲେ ଓ ରଙ୍ଗମଞ୍ଚର ଅଧ୍ୟାତ୍ମ ପରିଷ୍କାରର ପରିଧି ମଧ୍ୟରେ ପ୍ରବେଶର ସୁବର୍ଣ୍ଣ ସୁଯୋଗ ପାଇ ନ ଥିଲେ ତାଙ୍କର ଭବିଷ୍ୟତ୍ କବିଜୀବନ କେଉଁ ଦିଗରେ ଗତି କରିଥାନ୍ତା, ତାହା ବର୍ତ୍ତମାନ କହି ହେବ ନାହିଁ । ପୁଣି ସେ ତାଙ୍କର ସେହି ସ୍ୱାଭାବିକ ଅପହରଣବୃତ୍ତିର ପୂର୍ଣ୍ଣ ସାର୍ଥକତା କରି ମଧୁକର ପରି ନିଖିଳ କାବ୍ୟକୁଞ୍ଜ-ଭବନର ସ୍ୱଭାବସୁନ୍ଦର ସୁମନ-ମାଳାରୁ ମକରନ୍ଦ ଅପହରଣଦ୍ୱାରା ବିଶ୍ୱହୃଦୟରଞ୍ଜନ ମଧୁଚକ୍ର ରଚନା କରି ନିଖିଳ ନରନାରୀଙ୍କ ସନ୍ତପ୍ତ ପ୍ରାଣରେ ପୀୟୂଷ ସିଞ୍ଚନର ସୁବିଧା ପାଇଲେ, ଏହା କେବଳ କବିକଳ୍ପନା ନୁହେଁ । ଏହାହିଁ ନିରୀହ ସତ୍ୟସନ୍ଧ ଇମର୍ସନ ପ୍ରଭୃତି ବିଶ୍ୱବିଖ୍ୟାତ ପ୍ରବନ୍ଧଲେଖକଙ୍କର ମତ । ମାର୍କିନ ଦେଶର ସ୍ୱନାମଧନ୍ୟ ସାହିତ୍ୟସମ୍ରାଟ ଇମର୍ସନ ସାହେବ ମହୋଦୟ ସେକ୍ସପିୟରଙ୍କ କବିପ୍ରତିଭାକୁ ସର୍ବୋଚ୍ଚ ସ୍ଥାନ ଦେଇ ତାହାଙ୍କୁ ସର୍ବଶ୍ରେଷ୍ଠ ଋଣଗ୍ରହୀତା ବା ଦେଣାଦାର କବି ଆଖ୍ୟା ପ୍ରଦାନପୂର୍ବକ

ତାଙ୍କର ଏହି ମହାଯଶସ୍ୱୀ ଚୌର୍ଯ୍ୟକୁଶଳତାର ଭୂୟସୀ ପ୍ରଶଂସା କରିଛନ୍ତି, "The greatest genius is the most indebted man" ଏହା ତାଙ୍କର ଉକ୍ତି । ନେଇ ଅଣି ଥୋଇ ଜାଣିବା ପ୍ରକୃତ ପ୍ରତିଭା-ସାପେକ୍ଷ । ସେକ୍ସପିୟରଙ୍କ ସେ ପ୍ରତିଭା ବିଶେଷଭାବରେ ଥିଲା ବୋଲି ସେ ସର୍ବୋଚ୍ଚ ସ୍ଥାନର ଅଧିକାରୀ ହୋଇ ପାରିଛନ୍ତି । ତାଙ୍କର ସମକକ୍ଷ କେହି ନାହାନ୍ତି; ତାଙ୍କଠାରୁ ବଡ଼ ତ କଳ୍ପନାର ଅତୀତ । ସେ ସେହି ଅସମୋର୍ଦ୍ଧ୍ୱ ପ୍ରତିଭାବଳରେ ମହାଚୟନନିପୁଣତାର ପରିଚୟ ଦେଲେ ଓ ନିଜର ମୌଳିକତା ସେଥିରେ ଛିଲେ ହେଲେ ବ୍ୟାହତ ଓ ଖର୍ବୀକୃତ ନ ହୋଇ ବରଂ ପୂର୍ଣ୍ଣମାତ୍ରାରେ ସାଫଲ୍ୟମଣ୍ଡିତ ଓ ଶ୍ରୀସମୃଦ୍ଧିସମ୍ପନ୍ନ ହୋଇ ସୁଦିବ୍ୟ ମହିମାରେ ପ୍ରତିଭାତ ହେଲା । ଏହି କଥାର ପ୍ରତିଧ୍ୱନି କରି କାବ୍ୟପ୍ରତିଭାରହିର ଚିରନ୍ତନ ଗ୍ରାହକମାନଙ୍କ ମଧ୍ୟରୁ ଅନ୍ୟତମ ସୁଚରିତ ପ୍ରବନ୍ଧଲେଖକାଗ୍ରଣୀ ମହାମନା ଷ୍ଟିଫେନସନ୍ ସାହେବ କହିଲେ—ଅନୁକରଣ ମୌଳିକ-କଳ୍ପନା-ବିହଙ୍ଗୀର ପକ୍ଷକୁ ଛେଦନ କରି ତାକୁ ପଙ୍ଗୁ କରେ ନା— Imitation does not clip the wings of originality. ଏବଂ ପୁଣି କହିଛନ୍ତି-- Shakespeare, the Imperial comes directly from a school. ଅର୍ଥାତ୍ କାବ୍ୟ-ଜଗତରେ ସାର୍ବଭୌମ ପଦବୀରେ ସୁପ୍ରତିଷ୍ଠିତ ସାହିତ୍ୟସମ୍ରାଟ ସେକ୍ସପିଅର ନିଶ୍ଚୟ କୌଣସି ନା କୌଣସି ଗୋଟିଏ କବିସମ୍ପ୍ରଦାୟଭୁକ୍ତ ଥିଲେ । କୌଣସି ବିଶିଷ୍ଟ ସମ୍ପ୍ରଦାୟଭୁକ୍ତ ଜଣେ ସାଧାରଣ ଲୋକ ଉକ୍ତ ସମ୍ପ୍ରଦାୟ-ସୁଲଭ ବିଧିବିଧାନର ସଙ୍କୀର୍ଣ୍ଣ ଗଣ୍ଡୀ ମଧ୍ୟରେ ରହି ନିଜର ମୌଳିକତାର ଉତ୍କର୍ଷସାଧନରେ ବିଫଳମନୋରଥ ହୋଇପଡ଼େ; କିନ୍ତୁ ଅସାଧାରଣ ପ୍ରତିଭାଶାଳୀ କେହି କେହି ଉକ୍ତ ସଙ୍କୀର୍ଣ୍ଣତା ମଧ୍ୟରେ ନିବଦ୍ଧ ଥାଇ ମଧ୍ୟ ନିଜର ମୌଳିକତାର ସମ୍ପ୍ରସାରଣରେ କୃତକାର୍ଯ୍ୟ ହୁଅନ୍ତି । ସେହିପରି ସେକ୍ସପିଅର ତଦାଗନ୍ତୁକ ସନାତନପନ୍ଥୀ କବିସମ୍ପ୍ରଦାୟର ସଙ୍କୀର୍ଣ୍ଣତା ମଧ୍ୟରେ ରହି ମଧ୍ୟ ନିଜର ପ୍ରତିଭାବଳରେ ନିଜର ମୌଳିକତା ହରାଇ ନ ଥିଲେ । ଚର୍ବିତଚର୍ବିତ ବିଧିମାର୍ଗର ଗତାନୁଗତିକତା ତାଙ୍କର ମୌଳିକପ୍ରତିଭାକୁ

ଖର୍ବ କରି ନ ଥିଲେ । ସେ ନାଟ୍ୟାଚାର୍ଯ୍ୟମାନଙ୍କ ମଧ୍ୟରେ ଦୃଶ୍ୟକାବ୍ୟରେ ରାଗାନୁଗା ଶୈଳୀର (Romantic Style) ପ୍ରବର୍ତ୍ତନ କରିବି ନିଜ ପ୍ରତିଭାର ସାଫଲ୍ୟମଣ୍ଡିତ କରିଥିଲେ । ସେ ତାଙ୍କର ମହାମୂଲ୍ୟ ପ୍ରତିଭାବଳରେ ଉପାଦାନର ପ୍ରାଚୁର୍ଯ୍ୟ ସଙ୍ଗେ ସଙ୍ଗେ ମୌଳିକତାର ମାଧୁର୍ଯ୍ୟର ମନୋହର ସାମଞ୍ଜସ୍ୟ ବିଧାନ କରି ନାଟ୍ୟଜଗତରେ କବିକୁଳ-ହୃଦୟ-ରଞ୍ଜନ ଗୌରବ-ଚୂଡ଼ାମଣି ହୋଇଅଛନ୍ତି ।

ଏ କଥାଟି ଅମ୍ଭମାନଙ୍କୁ ଅଳ୍ପ ଭାବରେ ଅଡ଼ୁଆ ଲାଗିପାରେ ଲାଗି ପାରେ । ସାଧୁସଙ୍ଗ ସର୍ବ ବାଧାବିଘ୍ନ ହରଣ କରେ; ତେଣୁ ମନୀଷୀ ଇମର୍ସନ ସାହେବଙ୍କ ଶ୍ରୀଚରଣଛାୟାତଳରେ ବସି ଏ ପ୍ରହେଳିକାମୟୀ କଥାଟିର ରହସ୍ୟୋଦ୍‌ଘାଟନର ଚେଷ୍ଟା କରିବି ।

ଗୋଟିଏ ଉଦାହରଣ ଦେବି । ଦୁଇଟି ପାଚକ ଏକ ପ୍ରକାର ଉପକରଣ ନେଇ ପାକକ୍ରିୟା ସମାପନ କଲେ; କିନ୍ତୁ ଜଣକର ପ୍ରସ୍ତୁତ ଖାଦ୍ୟପେୟ ଅତି ଅଖାଦ୍ୟ ହେଲା ଓ ଅପରର ହାତର ସାମଗ୍ରୀଗୁଡ଼ିକ ଅତି ସୁସ୍ୱାଦୁ ଓ ମୁଖରୁଚିକର ହେଲା । ଏଣୁ ଦେଖାଗଲା, ଖାଦ୍ୟସାମଗ୍ରୀର ଉପାଦେୟତା ବା ସ୍ୱାଦୁ ଉପକରଣ ଉପରେ ନିର୍ଭର କରେ ନାହିଁ; ପାଚକର ପାକକ୍ରିୟାନୈପୁଣ୍ୟ ବା ରନ୍ଧନପଟୁତା ଉପରେ ନିର୍ଭର କରେ । ସେହିପରି ବର୍ଦ୍ଧକୀର ପ୍ରସ୍ତୁତ ପଦାର୍ଥଗୁଡ଼ିକର ସୌନ୍ଦର୍ଯ୍ୟ ବା କଳାସୌଷ୍ଠବ ତାହା ନିପୁଣ ହସ୍ତର ପରିଚୟ ଦିଏ; ତାହା ତାହାଦ୍ୱାରା ବ୍ୟବହୃତ କାଷ୍ଠାଦି ବା ଯନ୍ତ୍ରାଦି ଉପରେ ନିର୍ଭର କରେ କି? ଭୁବନେଶ୍ୱରର କାରୁକାର୍ଯ୍ୟଖଚିତ ଦେବାଳୟଶ୍ରେଣୀ ଓ ଆଗ୍ରାର ସୁବିଖ୍ୟାତ ତାଜମହଲ ଆଡ଼କୁ ଦୃଷ୍ଟି ନିକ୍ଷେପ କଲେ ଜଣାଯିବ, ଭାସ୍କର, ସ୍ଥପତି ଓ ଚିତ୍ରଶିଳ୍ପୀର ହସ୍ତନୈପୁଣ୍ୟହିଁ ତତ୍ ତତ୍ କଳାର ସୌଷ୍ଠବ ସମ୍ପାଦନର ମୁଖ୍ୟ କାରଣ ଓ ଉପାଦାନ ଗୌଣ କାରଣ ମାତ୍ର ।

ପାଚକ ନିକଟବର୍ତ୍ତୀ ବିପଣୀରୁ ଉପାଦାନ ସଂଗ୍ରହ କରିଛି ବୋଲି ତାହାର ରନ୍ଧନକ୍ରିୟାକୌଶଳରେ ତିଳେ ହେଲେ ହାନି ହେଲା କି? ବର୍ଦ୍ଧକୀର ନିପୁଣ ହସ୍ତର ପରିଚୟ ନେବାବେଳେ କାଷ୍ଠଗୁଡ଼ିକ କେଉଁ

ସ୍ଥାନରୁ ସେ ଆହରଣ କରିଛି ବୋଲି ଅନୁସନ୍ଧାନର ପ୍ରୟୋଜନ ଅଛି କି ? ଭୁବନେଶ୍ୱର, କୋଣାର୍କ ପ୍ରଭୃତିର କାରୁକାର୍ଯ୍ୟର ଶିଳ୍ପନୈପୁଣ୍ୟ ଦୃଷ୍ଟିରେ ଦେଖି କେଉଁ ସ୍ଥାନରୁ ସେ ପ୍ରସ୍ତରଗୁଡ଼ିକ କାହାଠାରୁ କିଏ ଆଣିଛି ଏ ସମ୍ବାଦ କେହି ନିଅନ୍ତି କି ? ସେହିପରି ତାଜମହଲର ବିଚିତ୍ର ଶୋଭା-ସମ୍ପଦ ଦେଖି ସେଠା ଚନ୍ଦ୍ରକଳାର ଭୁବନମୋହନ ମାଧୁର୍ଯ୍ୟତରଙ୍ଗରେ ମନପ୍ରାଣ ଏକାବେଳେକେ ନିମଜ୍ଜିତ ହେଲାବେଳେ କେଉଁଠାରୁ ନାନାରଙ୍ଗର ମର୍ମର ପ୍ରସ୍ତରାବଳୀ କିଏ କାହିଁ ଯୋଗାଇଲେ ବୋଲି ମନରେ ତ ହୁଏ ନା; କିନ୍ତୁ ତାଜମହଲର ସୌନ୍ଦର୍ଯ୍ୟର ଅନ୍ତତଃ କେତେକ ଅଂଶ ନିଶ୍ଚୟପରିମାଣରେ ଉପାଦାନର ସୁଷମା ଉପରେ ମଧ୍ୟ ନିର୍ଭର କରେ ଓ ଶିଳ୍ପୀର ସିଦ୍ଧହସ୍ତକୁଶଳତା ଛଡ଼ା ପ୍ରେମିକପ୍ରେମିକାଙ୍କ ମହାପ୍ରେମମୟ ହୃଦୟର ସରସତା ସ୍ତରେ ସ୍ତରେ ଫୁଟି ଉଠିଛି ପରି ଜଣାପଡ଼େ ।

ବର୍ତ୍ତମାନ ବକ୍ତବ୍ୟର କହିବା କଥା—ସେକ୍ସପିଅର ତ କେବଳ ଉପାଦାନ ବା କଥାବସ୍ତୁ ମାତ୍ର ଗ୍ରହଣ କରି କ୍ଷାନ୍ତ ହୋଇ ନାହାନ୍ତି; ସେ ତ ଭାବ ଓ ଭାଷା—ଏମନ୍ତ କି ସମଗ୍ର ନାଟକଟି ଅପରଠାରୁ ଗ୍ରହଣ କଲେ—ତେବେ ସାମାନ୍ୟ କିଛି ପରିବର୍ତ୍ତନ ମାତ୍ର କରିଦେଲେ । ସେ କିପରି ତାଙ୍କର ମୌଳିକତା ରକ୍ଷା କଲେ ? ହାକିମଙ୍କ ଆଗରେ ହୁକ୍କା ଚୋର କହିଲା ଭଲ ହେଲା । "ହଜୁର, ମୁଁ କେବଳ ହୁକ୍କାର ନଳ ଓ ନଡ଼ିଆ ଖୋଳଟି ନେଇଛି ସିନା, ମୁଁ ଶପଥ କରି କହୁଛି, ହୁକ୍କା ଚୋରି କରି ନାହିଁ: ଧର୍ମାବତାର ।"

ଏହିପରି ପୂର୍ବପକ୍ଷ ଆଶଙ୍କା କରି ସକଳ ପ୍ରକାର ସନ୍ଦେହ ନିରସନ ନିମନ୍ତେ ଅନ୍ୟ ଏକ ଉଦାହରଣର ସାହାଯ୍ୟ ନେବାକୁ ହେଲା । ଜଣେ କୁମ୍ଭକାର ରଙ୍ଗମାଟିର ଗୋଟିଏ ମୃଣ୍ମୟୀ ପ୍ରତିମା ନିର୍ମାଣ କଲା । ଅବିକଳ ମନୁଷ୍ୟଟି ପରି ଅଙ୍ଗ ପ୍ରତ୍ୟଙ୍ଗ ଓ ଠିକ ଜୀବନ୍ତ ମନୁଷ୍ୟ ପରି ଦେଖିବାକୁ ମାତ୍ର ପ୍ରକୃତରେ ଲାବଣ୍ୟପ୍ରତିମାଟି ନିର୍ଜୀବ । କାରିକରର ଯଥେଷ୍ଟ କଳାନୈପୁଣ୍ୟ ସତ୍ତ୍ୱେ ସେ ଜୀବନ୍ୟାସ ଦେଇ ପାରେ କି ? ଯଦି କେହି ସଞ୍ଜୀବନୀମନ୍ତ୍ରବଳେ ଜୀବନ୍ୟାସ ଦେଇ ସଜୀବ କରି ପାରେ, ତେବେ ତାହାର କୃତିତ୍ୱର ପ୍ରଶଂସା

ନ କରି ରହି ହେବ ନାହିଁ । ସେ ଅସାଧ୍ୟ ସାଧନା କଲା । ଅଘଟନ-ଘଟନ-ପଟୀୟସୀ ତାହାର କରଣୀରେ ସମସ୍ତେ ଚମକୃତ ହେବେ ନାହିଁ କି ? ସେହିପରି ସେକ୍ସପିୟର ଶୁଷ୍କ ନୀରସ ନିର୍ଜୀବ ଅସ୍ଥିକଙ୍କାଳସାର ମୂଳଧାରାଗ୍ରହରେ ଜୀବନ୍ୟାସ ଦେଇ ସେମାନଙ୍କୁ ରକ୍ତମାଂସଶରୀରବିଶିଷ୍ଟ ନରନାରୀରୂପେ ଛିଡ଼ା କଲେ । ସୁଖଦୁଃଖ ବାତ୍ୟାବିକ୍ଷୋଭରେ ଆନ୍ଦୋଳିତ ସେମାନଙ୍କର ହୃଦୟରେ କଳିଲ ଭାବରାଜିକୁ ଅନୁରୂପ ଭାଷା ପ୍ରଦାନ କଲେ । ଯାହା କେବଳ ଗୋଟାଏ ଅସ୍ଥିକଙ୍କାଳମୟ ମାଟିର ସ୍ତୂପ ଭଳି ନିର୍ଜୀବ ହୋଇ ପଡ଼ିଥିଲା, ତାହା ଆଜି ସହଜ ମାନବଦେଶରେ ଉଭା ହୋଇ ହୃଦୟର ବ୍ୟଥା ହୃଦୟର ଭାଷାରେ ବ୍ୟକ୍ତ କରିବାର ବାକ୍‌ଶକ୍ତି ଲାଭ କଲା । ହେମଲେଟ୍ ଅତି ଉଦାରହୃଦୟ ପ୍ରଶସ୍ତମନା ରାଜକୁମାର ଥିଲେ ଓ ଏକମାତ୍ର ପୁତ୍ରରୂପେ ପିତାଙ୍କର ଅଶେଷ ସ୍ନେହର ପାତ୍ର ଥିଲେ । ସ୍ୱୀୟ ଜନନୀର ଷଡ଼ଯନ୍ତ୍ରରେ ଖୁଲ୍ଲତାତଙ୍କ ହସ୍ତରେ ସ୍ନେହମୟ ପିତାଙ୍କର ଅକାଳବିୟୋଗସମ୍ବାଦ ପିତାଙ୍କ ପ୍ରେତାତ୍ମାମୁଖରୁ ଶୁଣି ପିତୃଭକ୍ତଶିରୋମଣି ହେମଲେଟଙ୍କ ସ୍ନେହପ୍ରବଣ ହୃଦୟରେ ଯେଉଁ ଘୋର ଆନ୍ଦୋଳନର ସୃଷ୍ଟି ହେଲା, ତାହାର ଭୀମକାନ୍ତ ମୂର୍ତ୍ତି ଅନ୍ତର୍ଯାମୀଙ୍କ ଛଡ଼ା କାହାରିକୁ ଗୋଚର ନ ଥିଲା । ବିଶ୍ୱବ୍ରହ୍ମାଣ୍ଡ ମଧ୍ୟରେ ଏକମାତ୍ର ସେକ୍‌ସପିୟର ଦିବ୍ୟ ପ୍ରତିଭାବଳରେ ସେ ଆନ୍ଦୋଳନର ପ୍ରତିବିମ୍ବ ଅଙ୍କନ କରିବାକୁ କ୍ଷମ ହୋଇଥିଲେ । କେଉଁ ଲୋକ କି ଅବସ୍ଥାରେ ପଡ଼ିଲେ ତାହାର ହୃଦୟ କିପରି ବିକ୍ଷୁବ୍ଧ ହୁଏ ଓ ସେହି ବିକ୍ଷୋଭରୁ ତାହାର ହୃଦୟରେ କେଉଁ ସୂକ୍ଷ୍ମ ଭାବରାଜି ଯୁଗପତ୍ ଉଦିତ ହୁଏ, ତାହାର ଅନୁରୂପ ଛବି ସେ ଭାଷା ସାହାଯ୍ୟରେ ଅବିକଳ ଅଙ୍କନ କରିବାକୁ ସମର୍ଥ ଥିଲେ ।

ସୁତରାଂ ପୁରାତନ ପୋଥିରେ ଯାହା ଥିଲା, ତାହା କେବଳ ଅସ୍ଥି-ଚର୍ମସାର ଗଳ୍ପ ପରି । ଜୀବନ ଓ ଜୀବନର ସରସତା ସେଥିରେ ନ ଥିଲା । ପୁଣି କେଉଁ ଲୋକର ମୁଖରେ କି ଭାଷା ଶୋଭା ପାଇବ ଓ କଏଁ କି ଭାବର ଅଧିକାରୀ ଇତ୍ୟାଦି ଇତ୍ୟାଦି ଜଟିଳ ମନସ୍ତତ୍ତ୍ୱର ସୂକ୍ଷ୍ମ ସୂକ୍ଷ୍ମ କଥା, ସେ ଦିବ୍ୟଚକ୍ଷୁରେହିଁ ଉଦ୍ଭାବନ କରି ପାରୁଥିଲେ । ସେ ଏକାଧାରରେ

ଦ୍ରଷ୍ଟା ଓ ସ୍ରଷ୍ଟା ଥିଲେ । ଦେଖିବାର ଚକ୍ଷୁ ଯାହାର ନାହିଁ, ସେ କବି ହେଲେହେଁ ଅନ୍ୟର ହୃଦୟନିଃସୃତ ଭାବରାଶିର ମହିମା କଳି ପାରେ ନାହିଁ ! ପୁଣି ଭାବରାଶିକୁ ଭାଷାର ତୂଳିକାରେ ଅଙ୍କିତ ଓ ଅଭିବ୍ୟକ୍ତ କରିବାର କ୍ଷମତା ମଧ୍ୟ ଲୋଡ଼ା । ସେକ୍ସପିୟରଙ୍କର ଉଭୟ କ୍ଷମତା ପୂର୍ଣ୍ଣମାତ୍ରାରେ ଥିଲା । ଏହା ମଧ୍ୟ ବିଶେଷ ପ୍ରଣିଧାନର ଯୋଗ୍ୟ ଯେ ସ୍ୱଳ୍ପ ମେଧାବୀ କବି ସବୁଗୁଡ଼ିକ ଅଦଳବଦଳ କରି ନିଜର ଗୋଟିଏ ସ୍ୱତନ୍ତ୍ର ନୂତନ ନାଟକ ଲେଖି ସ୍ୱକୀୟ ପ୍ରତିଭାବିକାଶର ସୁଯୋଗ ପାଇ ପାରନ୍ତି ; କିନ୍ତୁ ସେକ୍ସପିଅରଙ୍କ ବାହାଦୁରୀ ଏହି ଯେ—ସେ ଅପର କବି-ଲିଖିତ ପୁରାତନ ନାଟକଟିକୁ ପ୍ରାୟ ପୂରାପୂରି ରକ୍ଷା କରି କେବଳ ସ୍ଥଳ-ବିଶେଷରେ ଯତ୍‌କିଞ୍ଚିତ୍ ପରିବର୍ତ୍ତନ କରି ମହାଇନ୍ଦ୍ରଜାଲର ସୃଷ୍ଟି କରି ପାରୁଥିଲେ । ଏହାହିଁ ତାଙ୍କର ଅଲୋକସାମାନ୍ୟ ପ୍ରତିଭା, ଅସାଧାରଣ ଧୀମତ୍ତା ଓ ଅସମୋର୍ଦ୍ଧ୍ୱ କଳାନୈପୁଣ୍ୟର ଅଭ୍ରାନ୍ତ ପରିଚୟ ପ୍ରଦାନ କରୁଅଛି । ସେ ଯେ ଏ ଦିଗରେ ଅତି ସିଦ୍ଧହସ୍ତ ଥିଲେ ଏହାହିଁ ତାହାର ଅକାଟ୍ୟ ଯୁକ୍ତି ଓ ଅମୋଘ ପ୍ରମାଣ ଅଟେ ।

ଉଲ୍ଲିଖିତ ପ୍ରଣାଳୀର ସମାଲୋଚନରୁ ଦେଖାଯାଏ ଯେ ପାଶ୍ଚାତ୍ୟ-ଖଣ୍ଡର ସମାଲୋଚକମାନେ କେଡ଼େ ସୂକ୍ଷ୍ମଦର୍ଶୀ ଓ କେଡ଼େ ସାରଗ୍ରାହୀ । ସହାନୁଭୂତିର ଦୃଷ୍ଟିକୋଣରୁ ନ ଦେଖିଲେ, କବିସୃଷ୍ଟିର ମହିମା ହୃଦୟଙ୍ଗମ ହୁଏ ନାହିଁ । ବିଧିମାର୍ଗର (Classicism ) ଗତାନୁ-ଗତିକତାର ବଶବର୍ତ୍ତୀ ହୋଇ ଚର୍ବିତଚର୍ବଣ ପାରମ୍ପର୍ଯ୍ୟର ମୋହରେ ପଡ଼ି ରହିଲେ ମୌଳିକତ୍ୱଦୃଷ୍ଟିର ବିଶେଷତଃ ରାଗାନୁଗା ଶୈଳୀର (Romantic Style) ନବୀନତାର-ପୂର୍ଣ୍ଣ ଆସ୍ୱାଦନ ଅସମ୍ଭବ । ଏହା ପାଶ୍ଚାତ୍ୟର ଉଦାର-ଚେତା ପ୍ରଶସ୍ତମନା ଓ ବିଶାଳହୃଦୟ ସମାଲୋଚକମାନେହିଁ ବୁଝିଥିଲେ ! ବୁଝିଥିଲେ ବୋଲି ତ, ସେକ୍ସପିଅରଙ୍କ ଅତି ଅଭିନବ ଅଦ୍ଭୁତ କଳ୍ପନା-ବିଳାସ ଓ ରାଗମାର୍ଗାନୁମୋଦିତ କାବ୍ୟସୃଷ୍ଟିର ନବନତାରେ ବିଚଳିତ ନ ହୋଇ ତାର ପୂର୍ଣ୍ଣମାଧୁର୍ଯ୍ୟର ସମ୍ବାଦ ବିତରଣ କରିଥିଲେ । ଏପରି ସମାଲୋଚନାର କ୍ଷୀଣ ସୂଚନା ପର୍ଯ୍ୟନ୍ତ ହିଁ ଏ ସ୍ଥାନର ବାଣୀ-

ପୀଠରେ ଅଦ୍ୟାପି ହୋଇ ନାହିଁ । ଏମନ୍ତ କ ଲେମ୍ (Lamb), ଷ୍ଟୀଭେନ୍‌ସନ୍ (Stevenson , ଚେଷ୍ଟାରଟନ୍ (Chesterton) ପ୍ରମୁଖ ପ୍ରବନ୍ଧଲେଖକଙ୍କର ଶ୍ରୀଗାନୁଗା ପଛନ୍ଦର ପ୍ରବନ୍ଧ ଭାରତସାହିତ୍ୟରେ ଦେଖାଯାଇ ନାହିଁ । କେବଳ ଆମ ଦେଶର ଜଣେ ପ୍ରତିଭାଶାଳୀ ଲେଖକଙ୍କର ସାହିତ୍ୟସମାଗ୍ରର ନାମକ ପୁସ୍ତକ ସେହି ଶ୍ରୀଗାନୁଗା ଶୈଳୀର ଷୀଣ ସୂଚନା ଦେଇ ଅପାଳକ ଶ୍ରଜ୍ୟରେ ଝଳ୍‌ଲଚମକ ପଦ ଦେଖାଦେଇ ଉଭେଇଗଲା ଓ ସେଥିରୁ ତାଙ୍କର ଉକ୍ତ ପ୍ରତିଭା ଥଳ କାଳବନ୍ଧ୍ୟା-ଦୋଷରେ ଦୂଷିତ ହେବାକୁ ବସିଲାଣି ।

ଯେ ଦେଶର ପ୍ରତିଭାଶାଳୀ ସାହିତ୍ୟରଥୀମାନେ ମଧ୍ୟ କବିତାଠାରୁ ଉପନ୍ୟାସକୁ, ପଦ୍ୟଠାରୁ ଗଦ୍ୟକୁ ଏବଂ ଲଳିତକଳାଠାରୁ ଜନ୍ତରଞ୍ଜନକୁ ବେଶୀ ଆଦର କରନ୍ତି ଏବଂ ଯେ ଦେଶର ଶ୍ରଚୀନବିଶାରଦମାନେ ପଞ୍ଚବଗ୍ରାହୀ ପଣ୍ଡିତଙ୍କ ଆସନରେ ବସି ଶ୍ରୀଧାନାଥଙ୍କଠାରୁ ମଧୁସୂଦନଙ୍କୁ କାବ୍ୟଜଗତରେ ଉଚ୍ଚତର ଆସନ ଦେବାକୁ ଚଳେ ହେଲେ ଦ୍ୱିଧା ବୋଧ କରନ୍ତି ନାହିଁ ଓ ଯେଉଁ ଦେଶର ସାହିତ୍ୟିକମାନେ କେହି କେହି ଉପେନ୍ଦ୍ର ଭଞ୍ଜଙ୍କୁ ବାଣୀପୀଠରୁ ଏକାବେଳକେ ନିର୍ବାସିତ କରିବାରେ ବଦ୍ଧପରିକର ଥାଉଁ, ଅନ୍ୟ ପକ୍ଷରେ କେହି କେହି ଉପେନ୍ଦ୍ରଭଞ୍ଜଙ୍କୁ ପୃଥିବୀର ସର୍ବଶ୍ରେଷ୍ଠ ବା ଏକମାତ୍ର ସୁକବି ବୋଲି ଘୋଷଣା କରିବାକୁ କୁଣ୍ଠିତ ନୁହନ୍ତି, ସେ ଦେଶରେ ଅଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ ଇତରସାଧାରଣ ଲୋକ ଯେ ଶିକ୍ଷକଠାରୁ ପୁଲିସ କନ୍‌ଷ୍ଟେବଲକୁ ଓ ଧର୍ମଯାଜକଠାରୁ ଟିକସ୍ କଲେକ୍‌ଟରଙ୍କୁ ବେଶୀ ଭକ୍ତି ଓ ଭୟ କରିବ, ସେଥିରେ ଆଉ ବିଚିତ୍ରତା କଅଣ ଅଛି ? ବସ୍ତୁତଃ ଆମର ଏହି ଦୂଷିତ ବାତାବରଣ ଦୋଷରୁ ସାହିତ୍ୟସମାଗ୍ରରରୂପ ପ୍ରବନ୍ଧଶୈଳୀ ତଥା ରବୀନ୍ଦ୍ରଶୈଳୀର ସୁଗ୍ରନ୍ଥ ନିଦର୍ଶନ "ବକୁଳ ଅମାସେ" ପ୍ରଭୃତି କବିତାର ହଠାତ୍ ଗଙ୍ଗାମବୁଡ଼ି ହୋଇଯିବାର ଦେଖି ବ୍ୟଥିତହୃଦୟର ବେଦନା କିଞ୍ଚିତ୍ ପ୍ରକାଶ କଲି ମାତ୍ର । ଏହା ସମାଲୋଚନା ନୁହେ ।

ନିରପେକ୍ଷ ସହାନୁଭୂତିପୂର୍ଣ୍ଣ ଦୃଷ୍ଟି ସୁସମାଲୋଚନାର ପ୍ରାଣ । କିନ୍ତୁ ଅମ୍ଭମାନଙ୍କର ଦୃଷ୍ଟି କାମଳରୋଗରେ ସଦା ସର୍ବଦା ଆକ୍ରାନ୍ତ—ସୁତରାଂ ଦୃଶ୍ୟମାନ ପଦାର୍ଥର ଯଥାର୍ଥ ସ୍ୱରୂପର ଉପଲବ୍ଧି କିପରି ସମ୍ଭବ ହେବ ? କେତୋଟି ପ୍ରଶ୍ନୋତ୍ତରମାଳା କଣ୍ଠସ୍ଥ କରି ସାମାନ୍ୟ ଗୋଟାଏ ଯୋଡ଼ାଏ ଉପାଧିହାସଲ କରି ପୋଥିରେ ଡୋର ଦେବା ହିଁ ସାର । ସେମାନେହିଁ ହଠାତ୍ ଉଠି ବ୍ରହ୍ମା ବନିବନିଲେଇଲ୍ଲ ପରି ସାହିତ୍ୟରଥୀଙ୍କ ଆସନମଣ୍ଡିତ କରି ମହାମହୋପାଧ୍ୟାୟ ବୋଲ୍ଲାଉଛନ୍ତି । କେହି କେହି ମାଘଙ୍କୁ କାଳିଦାସ ଭବଭୂତିଙ୍କ ଅପେକ୍ଷା ବହୁ ଉଚ୍ଚରେ ବସାଇବାକୁ ଗୃହାନ୍ତ—କାରଣ ହେଲ—'ମାଘେ ସନ୍ତି ତ୍ରୟୋ ଗୁଣାଃ ।' ଯେଉଁମାନେ ବି.ଏ. ଏମ.ଏ. ପାଶ କରି ପୋଥିରେ ଡୋର ଦେଇ ଦେଶସେବା କମ୍ବା ମହାପ୍ରସାଦସେବା ବ୍ରତ ଉଦ୍‌ଯାପନ କରିବାରେ ନିଜର ଦୁର୍ଲଭ ମନୁଷ୍ୟ-ଜନ୍ମ ବ୍ୟାପୃତ କରି ନିଜକୁ ଧନ୍ୟ ମଣନ୍ତି, ସେମାନଙ୍କ ମଧ୍ୟରୁ କେହି ସେକ୍‌ସପିୟର ପଢ଼ିଲ୍ଲଭଲଂ ପଢ଼ିଛନ୍ତି ବୋଲି ମୋର ବିଶ୍ୱାସ ନାହିଁ । ଇତରକୋଟୀର ଜନତା ବା କିପରି ମହାକବିଙ୍କ ଚରଣାଶ୍ରୟ ଲାଭ କରିବେ ? କିନ୍ତୁ ସମସ୍ତେ ଏକ ସ୍ୱରରେ ଅମ୍ଳାନବଦନରେ ମୁକ୍ତକଣ୍ଠରେ ବଜ୍ରଗମ୍ଭୀର ନିର୍ଘୋଷରେ କହି ବସିବେ ଯେ ଆମ କାଳିଦାସ ତାଙ୍କ ସେକ୍‌ସପିୟରଙ୍କଠାରୁ ଢେର ବଡ଼; କାରଣ ଏ ହେଉଛନ୍ତି ଆମ କାଳିଦାସ, ସେ.ହେଲେ ତାଙ୍କ ସେକ୍‌ସପିୟର । ଅକାଟ୍ୟ ପ୍ରମାଣ ଓ ଅଖଣ୍ଡନୀୟ ଯୁକ୍ତି । ଏହା ଯେ (Criticism) ନୁହେଁ; ତୁଚ୍ଛା ନିପଟ (Patriotism) ପେଟ୍ରିଓଟିସମ୍ ।

ଏହିପରି ବିଦ୍ୱେଷପରଳାବୃତନୟନରେ ଦେଖିବାକୁ ଗଲେ କେବସ୍ତୁଙ୍କର ଗୁଣ ଦୋଷ ନିର୍ଦ୍ଧାରଣ ଅସମ୍ଭବ । ସାହିତ୍ୟସିଂହାସନ ଆଜି ସାହିତ୍ୟସମ୍ରାଟ୍‌ଶୂନ୍ୟ । ଗଣତନ୍ତ୍ର ଯୁଗରେ ସ୍ୱାଧୀନତାର ନବୀନ ମଦିରାପାନରେ ସମସ୍ତେ ଉନ୍ମତ୍ତ ଓ ଉଚ୍ଛୃଙ୍ଖଳ । ଏହି ଅରାଜକତାହିଁ ଯେତେ କିଛି ସମାଲୋଚନା ବିଭ୍ରାଟ ସୃଷ୍ଟି ଓ ପୁଷ୍ଟି କରି ଚାଲିଅଛି । କେବଳ ପାଣିଗ୍ରାହୀଙ୍କ କଥା କହି ଦୁଃଖ ପ୍ରକାଶ କରି କ୍ଷାନ୍ତ ହେବା

ଠିକ୍ ନୁହେଁ । "ପଲ୍ଲୀମଙ୍ଗଳ"ର କବି ତ ପୁଣି କନକକୁଟୀରଙ୍ଗର ମୋହିନୀ ମାୟାରେ ଭୁଲି କବିତା-ବନିତାକୁ ଏକାକିନୀ ଶୂନ୍ୟ ପର୍ଣ୍ଣକୁଟୀରରେ ଛାଡ଼ି ମାୟାମୃଗ ପଛରେ ଧାବମାନ ହେଲେ । କନକମୃଗର ସନ୍ଧାନରେ ବ୍ୟର୍ଥମନୋରଥ ହୋଇ ପୁଣି "କନକଲତା"ର ଖବର ନେଲେ । କିନ୍ତୁ ଉଦ୍ଦେଶ୍ୟ ଏକ । ହିରଣ୍ୟକଶିପୁର ଯୁଗରେ ହିରଣ୍ମୟ ସ୍ୱପ୍ନ ଦେଖିବାହିଁ ହେଲା ଯୁଗୋଚିତ ଧର୍ମ । ଚନ୍ଦ୍ରାମଣି କିନ୍ତୁ ତାଙ୍କର ଠିକଣାଗଛ ଗଢ଼ିବାବେଳେ ମନ୍ଦିରଗର୍ଭ (ମନ୍ଦାର୍ଦ୍ଧ) ଯାଇ କାନ୍ଥାରରେ ପଡ଼ି ନ ଥିଲେ । ତାଙ୍କର ହେଲା, ଯଥା ପୂର୍ବଂ ତଥା ପରଂ । ବିଶ୍ୱକବି ରବୀନ୍ଦ୍ରନାଥ ତ ଶ୍ରୀକରଧୃତ ମଞ୍ଜୁବୀଣା ଉଳେ ଫୋପାଡ଼ ଦେଇ ତାଙ୍କର କବିତା ନନ୍ଦନ-ବନର ସୁରମ୍ୟ ଉପକଣ୍ଠରେ ଗୋଟାଏ ଗୋମୟପଲ୍ୱଳ ସୃଷ୍ଟି କରି ଯୁଗଧର୍ମର ସମ୍ମାନ ରକ୍ଷା କଲେ । ଦେଶାନ୍ତର ଓ କାଳାନ୍ତର ନ ମାନିଲେ ପୁଣି ଲୋକେ କଅଣ କହିବେ । ରାଧାନାଥ ତ ପୁଣି 'ବିବେକୀ' ଲେଖି ଅବିବେକୀ ପରି ବହୁମୂଲ୍ୟ ସମୟ ନଷ୍ଟ କରି 'ପାର୍ବତୀ'କୁ ବିକଳାଙ୍ଗୀ ଓ 'ମହାଯାତ୍ରା'କୁ ଅର୍ଦ୍ଧଯାତ୍ରା କରି ରଖିଲେ । ଏହା କିନ୍ତୁ ସାମନ୍ତ-ଭୂଲର୍ଣ୍ଣୀଙ୍କର ଉଚ୍ଚଶିକ୍ଷା ପାଇ ବି.ଏ., ଏମ୍.ଏ. ପାଶ କଲା ପରେ ବାଡ଼ିପାରି ବସିଲା ପରି ହେଲା ଯେ । ହଁ, ବାଡ଼ିପାରିବାଟା ସ୍ୱହସ୍ତର ଦୈନନ୍ଦିନ ଜୀବନର ଗୋଟିଏ ପ୍ରୟୋଜନୀୟ ଶିକ୍ଷା । କିନ୍ତୁ ମୋର ବକ୍ତବ୍ୟ ଏହି ଯେ ବାଡ଼ିପାରିବା ଭଳି ବ୍ୟବହାର ଜୀବନର ଗୋଟାଏ ସାଧାରଣ ପାଲ ଗାଇବାକୁ ଯାଇ ୯ ଦୁର୍ଯ୍ୟୋଧନ ପଣ୍ଡାଙ୍କ ପରି ସୁଦୀର୍ଘ ଗୌରଚନ୍ଦ୍ରିକା ଗାଇବାର ଫଳ କଅଣ ? ଅସାଧ୍ୟସାଧନପଟୀୟସୀ ପ୍ରତିଭାବଳରେ ଯଦି କେହି ଷଡ଼ଜନ୍ମା ବାଣୀବରପୁତ୍ର ରବୀନ୍ଦ୍ରଶୈଳୀର ରହସ୍ୟ ଉଦ୍‌ଘାଟନରେ କ୍ଷମ ହୁଏ କିମ୍ବା ଯଦି ଅତି ମୌଳିକ ପଦ୍ଧତିରେ ରାଗମାର୍ଗାନୁମୋଦିତ ପ୍ରବନ୍ଧ ରଚନାରେ କୃତିତ୍ୱ ଅର୍ଜନ କରେ, ସେ ଯଦି ଗୃହପଞ୍ଚ ଜନତାର ବାହାବାରେ ଭୁଲି ସୁବର୍ଣ୍ଣପଦକର ଲୋଭରେ ପଡ଼ି ମାଟିର ମଣିଷ ଗଢ଼ି ବସେ, ତେବେ ତାଙ୍କର ଅନନ୍ୟସାଧାରଣ ପ୍ରତିଭା ଯେ ଅଚିରେ ମାଟି ହୋଇଯିବ, ତାହା ତାଙ୍କର ଅକୃତ୍ରିମ ବନ୍ଧୁମାନଙ୍କ ମଧ୍ୟରୁ କେହି

ହେଲେ ବର୍ଜିଇ ଦେଇ ନାହାନ୍ତି—କାରଣ ଏହା ପର ଅପ୍ରିୟ ସତ୍ୟ। ନିଜ ଅଧିକ ତ କାହାରି ଅଙ୍ଗୁଳି ଯାଏ ନାହିଁ। ସେ ପୁଣି ପ୍ରତିଷ୍ଠାର କିଷ୍ଠାପର ସେବକ। କିଏ ନୁହେଁ ? ମିଲଟନ ସତରୁସତ କହିଛନ୍ତି— "Fame is the last infirmity of noble minds" ସବୁ ଯିବ—କିନ୍ତୁ ଆତ୍ମପ୍ରତିଷ୍ଠା ଲିପ୍ସା ଦୁରାରୋଗ୍ୟ ବ୍ୟାଧି। ସେଥିପାଇଁ ତ ବୈଷ୍ଣବକବି କହିଲେ; ଯଦି ଭଲ ଗତି ଅଛି ତ ତେବେ—

'ଅତିଘୋର ବିଷସମ ଦେଖିବେ ସମ୍ମାନ,
ଅପମାନ ଦେଖ ଭାଇ ଅମୃତ ସମାନ।'

ପ୍ରତିଷ୍ଠାମୋହାନ୍ଧ ନୟନରେ ସ୍ୱର୍ଗ ଓ ନରକର ଭେଦ ବାରି ହୁଏ ନାହିଁ।

ପ୍ରତିଷ୍ଠାର କିନ୍ତୁ ଗୋଟାଏ ଶୁଭଙ୍କରୀ ମୂର୍ତ୍ତି ମଧ୍ୟ ଅଛି। ଲେଖକ-ଲେଖେ ପାଠକ-ପାଠିକାମାନଙ୍କ ପାଇଁ। ପାଠକ-ପାଠିକାମାନେ ଯଦି ରସ ପରିବେଷଣରେ ସନ୍ତୁଷ୍ଟ ହୋଇ କବିକୃତିର ପ୍ରଶଂସା କରନ୍ତି, ତେବେ ତାହା କବିଙ୍କୁ ନବପ୍ରେରଣାର ଉତ୍ତେଜନା ଆଣିଦିଏ। ଏ କଥା ଭାରି ସତ୍ୟ। କିନ୍ତୁ ଆମ ଦେଶରେ ସମାଲୋଚକମାନେ ପଢ଼ିବା ଆଗରୁ ସମାଲୋଚନା କରି ଦିଅନ୍ତି। ସେପରି ପ୍ରଶଂସା ସ୍ୱଦେଶପ୍ରେମ ବା ଉଦାରହୃଦୟବତ୍ତାର ପରିଚୟ ହୋଇ ପାରେ, କିନ୍ତୁ ତାହା ସମାଲୋଚନା ନୁହେଁ କି ଆସ୍ୱାଦନ ନୁହେଁ! ଏପରି ସମାଲୋଚନା ଭୂମିକା ଉପରେ ପ୍ରତିଷ୍ଠିତ କବିଙ୍କର ଯଶଃସୌଧ ମୂଳଭିତ୍ତିର ସ୍ୱାଭାବିକ ଦୌର୍ବଲ୍ୟଦୋଷରୁ ଅଚିରେ ଭୂମିସାତ୍ ହୁଏ। ବୋଧହୁଏ ସମସ୍ତେ ସ୍ୱୀକାର କରିବେ, ଯେଉଁମାନେ ଚିନ୍ତାମଣିଙ୍କୁ କବିବର ଉପାଧିରେ ଭୂଷିତ କରି ତାଙ୍କର ଅନନ୍ୟସାଧାରଣ ନିଷ୍ଠା ଓ ଅଧ୍ୟବସାୟର ମୂଲ୍ୟ ନିର୍ଦ୍ଧାରଣ କରିବାକୁ ବସିଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ତାଙ୍କର କବିତା ଉଲଭିବରେ ପଢ଼ି ନାହାନ୍ତି—ସମାଲୋଚନା ନିଭୃତରେ

ଓଜନ କରି ଦେଖିବା ତ ବହୁ ଦୂରର କଥା । ଏଥିର ଫଳ ହେବ—ଶୀଘ୍ର ତାଙ୍କର ଆଖିବନ ଜୀବ୍ୟନିଷ୍ଠାର ମାହାତ୍ମ୍ୟ ଆମ୍ଭେମାନେ ଏକାବେଳକେ ଭୁଲି ତାଙ୍କର କବିତାଗୁଡ଼ିକୁ ବିସ୍ମୃତିର ଗର୍ଭରେ ନିକ୍ଷେପ କରି ନିଶ୍ଚିନ୍ତ ହେବା । ଏ ଆଶଙ୍କାର ଅତି ପ୍ରତ୍ୟକ୍ଷ ପ୍ରମାଣ ପାଇ ମୁଁ ବ୍ୟଥିତ ହେଲି ।

ଇଂଲଣ୍ଡର କବି ଓ୍ୱାର୍ଡ଼ସ୍‌ଓ୍ୱାର୍ଥ (Wordsworth)ଙ୍କର ସ୍ଥାନ ଆଜି ଖୁବ ଉଚ୍ଚରେ । କିନ୍ତୁ ସେ ଯେତେବେଳେ ନବଯୁଗର ପ୍ରବର୍ତ୍ତକ-ରୂପେ ସ୍ୱଗାନୁଗା ଶୈଳୀର (Romanticism) ଅବତାରଣା କରି ବସିଲେ, ସେହି ସମୟର ସାହିତ୍ୟରଥୀମାନେ କହିଲେ—ଏ କେବେ ହେଲେ ଚଳିବ ନାହିଁ । "This will never do" ଆମ ଦେଶ ହୋଇଥିଲେ ଚଳି ନ ଥାନ୍ତା, କିନ୍ତୁ ତାଙ୍କ ଦେଶରେ ଉତ୍କଟ ରତ୍ନଜୀବୀର ତ ଅଭାବ ନାହିଁ । କେହି କହିଲେ—ଏହି ବିଶାଳ ଆବର୍ଜନାସ୍ତୂପ ମଧ୍ୟରେ କେଉଁଣ ଟିକିଏ ରଜ ରଜ ଦିଶୁଛି । ଅଣ୍ଡାଳି ଅଣ୍ଡାଳି ଖୋଜି ଖୋଜି ମଣି ମାଣିକ୍ୟ, ହୀରା ପର୍ଯ୍ୟନ୍ତ ପାଇଲେ; କିନ୍ତୁ ଆବର୍ଜନାରାଶି ତୁଳନାରେ ରତ୍ନସମ୍ଭାର ଖୁବ କମ୍; ହେଲେ କଅଣ ହେବ, ଝୁବ ବହୁମୂଲ୍ୟର ଦୁର୍ଲଭ ରତ୍ନ ଖଣ୍ଡେ ଖଣ୍ଡେ; ଲୋଭ ସମ୍ଭାଳି ନ ପାରି ରତ୍ନଜୀବୀ କଷ୍ଟକର ପରିଶ୍ରମ ସ୍ୱୀକାର କରି ଗୋଟିଏ ଅତିମଞ୍ଜୁଳ ମଣିମଞ୍ଜୁଷାରେ ସେ ଗୁଡ଼ିକ ଥୋଇ ସାହିତ୍ୟପ୍ରଦର୍ଶନୀକୁ ଭେଟିଥିଲେ । ଗୁଣଗ୍ରାହୀ ତ କେହି କେହି ଥିଲେ; ସେମାନେ ମୁଗ୍ଧ ହୋଇଗଲେ । ଏହା କଲେ ସ୍ୱନାମଧନ୍ୟ ମହାତ୍ମା ମେଥ୍ୟୁ ଆରନୋଲ୍‌ଡ଼ (Matthew Arnold)—ସେ ଏକାଧାରେ କବି ସମାଲୋଚକ ଓ ପ୍ରବନ୍ଧଲେଖକ ଥିଲେ । ଆମର କବିବର ରାଧାନାଥଙ୍କ କବିତାସଂଗ୍ରହ ଉଲ୍ଲିଖିତ ପ୍ରଣାଳୀରେ ସଂଯୋଜିତ ନ ହେଲେ କବିଙ୍କ ଭାଗ୍ୟାକାଶ ଯେ ଘୋରତମସାବୃତ, ଏହା ବୋଲିବା ବାହୁଲ୍ୟ ମାତ୍ର । ଅନ୍ତତଃ ଛାତ୍ରସମାଜ ଆଜି ତାଙ୍କଠାରୁ ବିମୁଖ ହେବାକୁ ବସିଲେଣି । ସୁବର୍ଣ୍ଣରେଖାର ଦିଗନ୍ତବ୍ୟାପୀ ବାଲୁକାରାଶିରେ କାହିଁ ଖଣ୍ଡେ ସୁବର୍ଣ୍ଣଟିକିରିର ସନ୍ଧାନରେ ବାହାରି ନିଜର ବହୁମୂଲ୍ୟ ସମୟ

(ବିଶେଷତଃ ଏ ଜଟିଳ ଓ ଦୁର୍ଦ୍ଧର୍ଷ ଜୀବନସଂଗ୍ରାମ ଅବସରରେ) ଅତି-ବାହିତ କରି ଅନକର ମୂଲ୍ୟ ପାଇବା କଠିନ । ତାଙ୍କର ଅଗନ୍ତି-ବିସ୍ତାରୀ ସାହିତ୍ୟସାହାରା ମଧ୍ୟରେ ଯେ ନନ୍ଦନକାନନର ଶୋଭାସମ୍ପଦ-ଭରି ଓସେସିସ୍ ଅଛି, ତାହା ଆବିଷ୍କାର କରି ଜନସମୀପରେ ଉପସ୍ଥାପିତ କରିବାର ସମୟ କାହିଁ ଆସି ନାହିଁ ? ଇଂଲଣ୍ଡର କବି ଗ୍ରେ ( Gray ) ଙ୍କର ଏକମାତ୍ର Elegy ପାଇଁ ଜଗଦ୍‌ବିଖ୍ୟାତ—ଚନ୍ଦ୍ରାମଣିଙ୍କର ସ୍ୱଚ୍ଛସଲିଳା "ସାଳନ୍ଦୀ" କ ପାଇଁ ତାଙ୍କର ବିଶାଳ ଅବର୍ଜନାସ୍ତୂପ ମଧ୍ୟରେ ଚିରକାଳ ଲୁଚି ରହିବ ? ଅବର୍ଜନାପୂର୍ଣ୍ଣ ପୁଙ୍କଗନ୍ଧମୟ ପୁରାତନ ଜଳାଶୟର ପଙ୍କୋଦ୍ଧାର କରିବା ଓ ପୁରାତନ ପତନୋନ୍ମୁଖ ଦେବାଳୟର ଜୀର୍ଣ୍ଣସଂସ୍କାର କରିବା ଯଦି ମହାପୁଣ୍ୟ ବୋଲି ବିବେଚିତ ହୁଏ, ତେବେ ଏହି ରଚନାସ୍ତୂପ ଘାଣ୍ଟି ବହୁମୂଲ୍ୟ ରତ୍ନଚୟନ ଯେ ଦେଶମାତୃକା ସେବାର ଗୋଟିଏ ବିଶିଷ୍ଟ ଅଙ୍ଗ, ତାହା ବୋଲିବା ବାହୁଲ୍ୟ ମାତ୍ର । ତାହା ନ ହେବା ଯାଏ କବିବରଙ୍କ ପ୍ରତିଭାର କିରଣ ଆଉ ବାଣୀପୀଠକୁ ଉଦ୍ଭାସିତ କରି ପାରି ନାହିଁ । ଦୁଃଖର କଥା, ସୁସମାଲୋଚନା ଓ ସୁଚୟନିକା ଅଭାବରୁ ଉତ୍କଳ ବାଣୀକୁଞ୍ଜର ମନୋଜ୍ଞ ପୁଷ୍ପରାଜି କେତେ କୁଅଡ଼େ ବନମାଳତୀ ପରି ବନେ ଫୁଟି ଝଡ଼ି ପଡ଼ୁଛି ତାହାର ସୀମା ପରିସୀମା ନାହିଁ ।

କେବଳ ଚନ୍ଦ୍ରାମଣିଙ୍କର କାହିଁକି, ସବୁ କବି, ସବୁ ମହାକବିଙ୍କର କବିତା-ନନ୍ଦନବନରୁ ବାଛି ବାଛି ସୁନ୍ଦର ଓ ସୁଗନ୍ଧ ପୁଷ୍ପମାନ ଚୟନ କରି ଭିନ୍ନ ଭିନ୍ନ ଶ୍ରେଣୀର ଚୟନିକାର ସଙ୍କଳନ ଦରକାର । ସବୁ ପୂଜାରେ ତ ସବୁ ଫୁଲ ଲାଗେ ନାହିଁ ? ସବୁ ସୁନ୍ଦରୀଙ୍କର ଗଳାକୁ ତ ସବୁ ରଙ୍ଗର ଫୁଲ ମନାଏ ନାହିଁ; ସୁତରାଂ ସଞ୍ଚୟନର ପ୍ରୟୋଜନୀୟତା ସର୍ବବାଦୀ ସ୍ୱୀକାର୍ଯ୍ୟ । ଗନ୍ଧମାଦନର ସର୍ବତ୍ର କିଛି ବିଶଲ୍ୟକରଣୀ ଥାଏ ନାହିଁ । ଚିହ୍ନି ନ ପାରିବା ଦୋଷରୁ ସମସ୍ତ ଗନ୍ଧମାଦନଟି ବୋହି ବୁଲିବା ପାଇଁ ଧୈର୍ଯ୍ୟ ଓ ଶକ୍ତି ଥିବା ଭଳି ହନୁମାନ୍ ବା କାହାନ୍ତି ? ସୁତରାଂ ବିଶଲ୍ୟକରଣୀଟି ଖୋଜି ଲୋଡ଼ି ପୁଡ଼ିଆ ବାନ୍ଧି ଏମନ୍ତ କ ଦରକାର ପଡ଼ିଲେ

ଅବାରସରେ ଗୋଲ ଓ ମନ୍ଥର ପରଖ ଦେଇ ହାତରେ ଖୁଆଇ ଦେବାକୁ ଗଲେ ଅମର ଲକ୍ଷ୍ମଣକୁମାରମାନେ ଯଦି ଦୟା କରି ମୁଖବ୍ୟାଦାନ କରନ୍ତି, ତେବେ ମହାସୌଭାଗ୍ୟର କଥା ମନେ କରିବାକୁ ହେବ । ବଡ଼ପାଟିଆ ଉପେନ୍ଦ୍ର ଭଞ୍ଜଙ୍କ ମୁହଁରୁ "ବାଳାଳିକା ମାଳିକା" ଶୁଣିଲେ କିଏ ବୋକା ନ ବନିଯିବ ? ତେବେ "ନିର୍ମଳ ଚନ୍ଦ୍ରମଣ୍ଡଳ ଶରଦେ ବିରାଜି"ର ଶଙ୍କରାଭରଣର ଲଳିତ ପଞ୍ଚମ ବଂଶୀଧ୍ୱନି ଶୁଣି ଗଣାବଣା ଧେନୁପରି ପରି କିଏ ବା ଫେରି ନ ଚାହିଁବ ? "ଅନ୍ଧ-ମକର-ଛାୟା-ନାକେ ଶୋଭିଥାଉ ଚକ୍ରେ", ଏପରି ଯମକର ଭୟରେ ଯମ ମଧ୍ୟ ଯାଙ୍କ ପାଖ ପଶି ନ ପାରିବାକୁ ସେ ପରି ଅମର ହୋଇ ବାତ୍ସ୍ୟଣଙ୍କ ସଙ୍ଗେ ପରାମର୍ଶ କରି ବୈଦେହୀଶ-ବିଳାସର ଉପସଂହାର ସ୍ୱରୂପ ବୈଦେହୀ-ବିଳାସ କବିରୂପେ କୋରାଇ ମାଇନର ସ୍କୁଲରେ ଅବଧାନୀ କରୁଅଛନ୍ତି । କିନ୍ତୁ ପୂର୍ବର ସେ ରାଜୁଡ଼ା ବେଶ ନାହିଁ । ରାଧାନାଥଙ୍କ ଜୀର୍ଣ୍ଣଶୀର୍ଣ୍ଣ ଅଙ୍ଗରଖାଟିଏ ସବୁବେଳେ ଘୋଡ଼ି ହୋଇଥାନ୍ତି । ଚଳିବା କଠିନ । ମୋର ତାଙ୍କର ନାମ ଜାଣି ବା ଲାଭ କଅଣ ? ଉତ୍ତରୀୟାଚ୍ଛନ୍ନ ଧାରଣ କରି କବି ହେଲେହେଁ ଉଦ୍ଭ୍ରାନ୍ତ ପରି ଦିଶନ୍ତି । ମୋର ବକ୍ତବ୍ୟ ଏହି ଯେ ଭଞ୍ଜଙ୍କର ଶୃଙ୍ଗାରରସସଙ୍କୁଳ, ତଥା ଯମକ-ଜଞ୍ଜାଳ-ବହୁଳ ଏବଂ ଅନୁପ୍ରାସ-ଛାତୁର୍ଯ୍ୟ-ପିଚ୍ଛିଳ କି ଶୃଙ୍ଖଳନାଜଟିଳ ଅଂଶଗୁଡ଼ିକ କେବଳ ବାଙ୍କେଶଙ୍କ ଚୂଡ଼ାମଣିଙ୍କ ପାଇଁ ରଖି ସୁକୁମାର-ମତି ପାଠକପାଠିକାଙ୍କୁ ଆଧୁନିକ ରୁଚିର ଅନୁବର୍ତ୍ତିନରେ ଚୟନିକାଟିଏ ବାଛି ଜାଣିଲେ, ବୋଧହୁଏ ସେମାନେ କବିଙ୍କୁ ଆଉ ଯମପରି ଭୟ କରନ୍ତେ ନାହିଁ । ଉତ୍କଳର ଲବ୍ଧପ୍ରତିଷ୍ଠ ସାହିତ୍ୟର ଧୁରନ୍ଧର ରଥୀମାନେ ଯେପରି ନାସିକା କୁଞ୍ଚନ କରି କବିଙ୍କ ପ୍ରତି ଔଦାସୀନ୍ୟ ଓ ସମୟ ସମୟରେ ଅସମ୍ମାନ ପର୍ଯ୍ୟନ୍ତ ଦେଖାନ୍ତି, ମୁଁ ସେମାନଙ୍କ ସଙ୍ଗରେ ଏକମତ ହୋଇ ପାରି ନାହିଁ । ସୁରଚନପନ୍ଥୀ ପୂର୍ବକାଳିଆ ରସପିପାସୁଙ୍କ କଥା ଛାଡ଼, ଆଧୁନିକ ଅନେକ କବିଙ୍କ କବିତାରେ ମୁଗ୍ଧ ଓ ଅଭିଭୂତ ଏମନ୍ତ କି ପଶୁ ପୁଚ୍ଛବିଷାଣହୀନ ସଙ୍ଗୀତାନଭିଜ୍ଞ ଅଚଗଦ୍ୟମୟପ୍ରାଣ

ବଲ୍ଲଭାଚାର୍ଯ୍ୟ ସ୍ୱାମୀପାଦମାନେ ଅଧୁନାକ ଉତ୍କଳିଷ୍ଠା ପାଇ ସୁଛା କବିଙ୍କ କାବ୍ୟସିନ୍ଧୁମନ୍ଥନରେ ମାତ୍ର ନିଜର ଦୁର୍ଲ୍ଲଭ ମାନବଜନ୍ମକୁ ବ୍ୟୟିତ କରିଦେବାକୁ ବସିଲେଣି । ସେଥିରେ ନ ଜାଣେ କି ମାଧୁରୀ ଅଛି, ସମୁଦ୍ରମନ୍ଥନୋଦ୍‌ଗୀର୍ଣ୍ଣ ବିଷପାନ କରି ମହାଦେବ ଯେପରି ନୀଳକଣ୍ଠ ହୋଇଥିଲେ, ଏମାନେ ଭଞ୍ଜ କାବ୍ୟସିନ୍ଧୁ ମନ୍ଥନ କରି କି ଆନନ୍ଦମଦିରା ପାନ କରି ଭୋଳ ହୋଇ ପଡ଼ିଲେ ଯେ ଶେଷକୁ ବାଣୀକୁଞ୍ଜର କଳକଣ୍ଠ-କୋକିଳ ହେବା ଆଶାରେ ଲେଖନୀ ଚାଳନ କରି ବସିଲେଣି । ମନ୍ଦ କବିଯଶଃ ପ୍ରାର୍ଥୀ ଉଦ୍‌ବାହୁରିବ ବାମନଃ । ପୁଣି ଗୋଟାଏ କଥା ଅଛି —ପରଶମଣି ପରଶରେ କୁଆଡ଼େ ଲୁହା ସୁନା ହୋଇଯାଏ । ଚନ୍ଦନ ବୃକ୍ଷର ପବନସ୍ପର୍ଶରେ ନିମ୍ବଗଛ କୁଆଡ଼େ ଚନ୍ଦନ ପାଲଟିଯାଏ । ମାଲବ୍ୟଜୀ ଓ ନିଜେ ପୁଣି ନବଯୌବନର ଲାଳସାରେ ପଡ଼ିଥିଲେ । ହଠାତ୍ ଉପରୁ ଜରୁରି ଡାକ ପଡ଼ିବାରୁ କ୍ଷାନ୍ତ ହେଲେ ସିନା । ଅସମ୍ଭବ ପୁଣି କଅଣ ଅଛି ? ଭଞ୍ଜକବିଙ୍କ ପ୍ରତିଭାସମ୍ପର୍କରୁ କେହି କେହି କବି ହେବାର ଦୁରାକାଂକ୍ଷା ପୋଷଣ କଲେଣି ।

ସବୁ କବିଙ୍କ ପକ୍ଷରେ ଏହା ଉକ୍ତି ଅଧିକରେ ପ୍ରଯୁଜ୍ୟ । ପୁଣି ଯେଉଁ କବି କର୍ତ୍ତବ୍ୟାନୁରୋଧର ବଶବର୍ତ୍ତୀ ହୋଇ ଲେଖନୀ ଚାଳନପୂର୍ବକ ପ୍ରଗାଢ଼ ଅଧ୍ୟବସାୟର ପରିଚୟ ଦିଅନ୍ତି ତାଙ୍କ ପକ୍ଷରେ ଏହା ବିଶେଷଭାବରେ ପ୍ରଯୁଜ୍ୟ । ମା ସାରଳା ଆସି କେତେବେଳେ କଣ୍ଠରେ ବସି ପଦ ଖେଳାଇବାର ଫୁରସତ୍ ପାଇବେ, ସେ ପର୍ଯ୍ୟନ୍ତ ଅପେକ୍ଷା କରି ବସିବାର ଧୈର୍ଯ୍ୟ ସେମାନଙ୍କର ନାହିଁ । ବହୁମୂଲ୍ୟ ସମୟଟା ବୃଥାଟାରେ ଅପବ୍ୟୟିତ କରି ନିଷ୍କର୍ମୀ ହୋଇ ବସି ରହିବା ଉଚିତ କି ? ପୁଣି ମନୁଷ୍ୟର ଜୀବନ କ୍ଷଣଭଙ୍ଗୁର, ଜଳର ବୁଦ୍‌ବୁଦ ପରି ଏବଂ ନଳିନୀଦଳଗତ ଜଳ ପରି ଭାରି ଚଞ୍ଚଳ । ସୁତରାଂ ମା ସାରଳା ପ୍ରସନ୍ନ ହେବାଯାଏ ଅପେକ୍ଷା ନ କରି ସେମାନେ ଅବିଶ୍ରାନ୍ତ ଲେଖନୀ ଚାଳନରେ ଲାଗି ଥାଆନ୍ତି । ସୁତରାଂ ମା ସାରଳାଙ୍କ କରୁଣା-କଣା-

ବନ୍ଧିତ ସେଗୁଡ଼ାକ 'ଘୃତସ୍ନାନଂ କୃତ୍ୱେନଂ' ପରି ଅଖାଦ୍ୟ ହୋଇପଡ଼େ । ନିବେଦିତ ବସ୍ତୁ ବିନା ପ୍ରସାଦ ବୋଲାଏ ଏବଂ ପ୍ରାଣିମାନଙ୍କ ଭୋକ୍ତବ୍ୟଂ ହୁଏ । କିନ୍ତୁ ମା ସାରଳାଙ୍କ ଅମୃତଦୃଷ୍ଟି ନ ପଡ଼ିବାରୁ ସେ ଗୁଡ଼ାକର ମାହାତ୍ମ୍ୟ ନଷ୍ଟ ହୁଏ ଖର୍ବ ହୋଇଯାଏ । କିନ୍ତୁ କବିଙ୍କୁ ଏ କଥା ମାଲୁମ ନାହିଁ । ସେ କେବଳ କର୍ତ୍ତବ୍ୟର ଦୁହାଇ ଦେଇ ଦଉଡ଼ି କୁଟିବାରେ ଲାଗିଛନ୍ତି । ଏହିପରି ଅସହିଷ୍ଣୁତା ବା ଅବିମୃଷ୍ୟକାରିତା ସବୁ କବିଙ୍କ ଭାଗ୍ୟରେ ଭଣା ଅଧିକରେ ହୋଇଥାଏ ।

ସବୁ ତିଥିରେ ତ ସମୁଦ୍ରରେ ଜୁଆର ଉଠେ ନାହିଁ । ଜ୍ଞାନଦାୟିର ଭାବସିନ୍ଧୁରେ ସେହିପରି ଜୁଆରର ସମୟ ଅଛି । ସୁଜାଣ କବି ସେହି ବ୍ରାହ୍ମ ମୁହୂର୍ତ୍ତିକୁ ଜାକି ବସିଥାଏ ; କିନ୍ତୁ ଅସହିଷ୍ଣୁ ଯେ ସେ ଜୁଆର ଛାଡ଼ ଅପିଲାଣି ଜାଣି ଶୁଣି ପେଲି ଚାଲିଥାଏ । ଫଳରେ ଜୁଆର ଛାଡ଼ିଗଲେ କୁମ୍ଭୀର ପରି ବେଳାଭୂମିରେ ପଡ଼ି ଛଟପଟ ହୁଏ । କୁମ୍ଭୀରଭାଗ୍ୟକୁ ବିନା ତାହାର ଗଜ-ବନ୍ଧୁ ଆସି ଭେଟିବାରୁ ତାକୁ ନେଇ ଗଭୀର ଜଳରେ ଛାଡ଼ିଲେ । କୁମ୍ଭୀର ଆପଣାର ପ୍ରାଣରକ୍ଷାକାରୀ ଗଜବନ୍ଧୁ ପ୍ରତି ଯେ ଭୟାବହ କୃତଜ୍ଞତା ପ୍ରଦର୍ଶନ କଲେ ତାହା ତ ଜଗବନ୍ଧୁଙ୍କୁ ଜଣା । କିନ୍ତୁ ଆମର କବିସାହିଙ୍କର ଗ୍ରାହକମାନେ କେହି ହେଲେ ତାଙ୍କର ପାଣ୍ଡୁଲିପିର ଅସ୍ଥି ଖଣ୍ଡେ ନେଇ ଗଙ୍ଗାରେ ବିସର୍ଜନପୂର୍ବକ ତାଙ୍କର ସ୍ମୃତିତର୍ପଣ କରିବାକୁ ନାରାଜ । ଧନ୍ୟ କବି, ଧନ୍ୟ ଦେଶ ।

ବସ୍ତୁତଃ ଯେଉଁମାନେ ଭଲ ଗାର୍ହ କବିତା ଲେଖନ୍ତି ସେମାନଙ୍କର ଅଧୀର ହେବା ଉଚିତ ନୁହେଁ । ସାରଳାଙ୍କ ପ୍ରସାଦକୁ ଅପେକ୍ଷା କରି ଧୈର୍ଯ୍ୟ ଧରି ଧାରଣା ଦେଇ ପଡ଼ିରହିବା ଉଚିତ । ନଚେତ୍ ଭାଷା ବିଭ୍ରାଟ ଉପସ୍ଥିତ ହୋଇପାରେ । ପୁଣି ଯେଉଁମାନେ ସମୟର ସଦ୍‌ବ୍ୟବହାରକୁ ମୁଖ୍ୟ କରି ପ୍ରଗାଢ଼ ଅଧ୍ୟବସାୟପୂର୍ବକ ଅବିଶ୍ରାନ୍ତ ଲେଖନୀଚାଳନ କରନ୍ତି, ସେମାନଙ୍କ ପକ୍ଷରେ ଧୂଆ ମୂଳା, ଅଧୂଆ ମୂଳା ସମାନ । ସରସ କବିତା ଓ ନୀରସ ଗଦ୍ୟମୟ ଲେଖା ମଧ୍ୟରେ ଯେ ସ୍ୱର୍ଗ ଓ ନରକର ବ୍ୟବଧାନ

ରହିଅଛି. ତାହା ସେମାନଙ୍କର ମୋହାନ୍ଧ-ନୟନକୁ ଦିଶେ ନାହିଁ । ଫଳରେ ରଙ୍ଗୀକୃତ ଅବର୍ଦ୍ଧନାଜଞ୍ଜାଳରେ ବାଣୀକୁଞ୍ଜ ଭରି ଉଠେ । ଯେପରି ପ୍ରତ୍ୟହ-ମାଦକସେବୀକୁ ନିଶା ବେଶୀ ଝାଙ୍କେ ନାହିଁ, ସେହିପରି କଷ୍ଟିବ୍ୟାହ୍ତବୋଧରେ ପ୍ରତ୍ୟହ ଗୁଡ଼ାଏ ଲେଖି ପକାଇବା ଯାହାର ଅଭ୍ୟାସ, ତାହାକୁ କାବ୍ୟରସଜନିତ ନିଶା ସେପରି ଝାଙ୍କେ ନାହିଁ । ଉନ୍ମାଦନାର ନିଶା ଛାଡ଼ିଗଲେ କବି ଏକାବେଳକେ ନିସ୍ତେଜ, ଅଚଳ ଓ ଶକ୍ତିହୀନ ହୋଇପଡ଼ନ୍ତି । ସେ ଅବସ୍ଥାରେ ଲେଖିବା କେବଳ ପଣ୍ଡଶ୍ରମ ମାତ୍ର । ଅର୍ଜୁନ ଏପରି ତ୍ରିଲୋକବିଜୟୀ ମହାବୀର ହୋଇ ସୁଦ୍ଧା ଯେତେବେଳେ ଶ୍ରୀକୃଷ୍ଣ ପ୍ରିୟସଖାଙ୍କ ନିଜ କଳା ହରଣ କରି ନେଲେ ସେତେବେଳେ ଅର୍ଜୁନ ଏପରି ହୀନବଳ ହୋଇପଡ଼ିଲେ ଯେ ନିଜ କରଧୃତ ଧନୁକୁ ବହନ କରିବାକୁ ଅଶକ୍ତ ହୋଇ ତାହାକୁ ବନ୍ଧୁକଣ୍ଠରେ ମସ୍ତକରେ ବନ୍ଧନ କରି ଫେରିଲେ । ସେ ବିଷ୍ଣୁକଳାଚ୍ୟୁତ ହୋଇ ଏପରି ଦୁର୍ବଳ ହୋଇପଡ଼ିଲେ ଯେ ଉର୍ବଶୀଙ୍କ ଶାପ ଶିରୋଧାର୍ଯ୍ୟ କରି ବୃହନ୍ନଳାରୂପେ ଫେରିବା ବେଳେ ସେପରି ହୋଇ ନ ଥିବେ । ପ୍ରତ୍ୟେକ କବିଙ୍କ ଦଶା ଠିକ୍ ସେହିପରି । ମା ସାରଳାଙ୍କ କୃପାଦୃଷ୍ଟିରୁ ବଞ୍ଚିତ ହେଲେ, କବିର ବାଗ୍‌ଲଳା ବାତୁଳତାର ସୀମା ଲଙ୍ଘନ କରେ । ସେହି ଅବଗ୍ରହ ସମୟରେ କବି ଧୈର୍ଯ୍ୟ ଧରି ଅଜ୍ଞାତ-ବାସରେ ରହିଲେ ବୁଦ୍ଧିମାନର କାର୍ଯ୍ୟ କରନ୍ତେ ଅସମୟଟା ଚାଲିଯିବା ଯାଏଁ ।

ଏପରି ହେବା ଖୁବ୍ ସ୍ୱାଭାବିକ । ଯେତେ ପ୍ରତିଭାଶାଳୀ ଲେଖକ ହୋଇନ୍ତୁ ନା କାହିକି, କ୍ଳାନ୍ତି ଓ ଅବସାଦ ଅନିବାର୍ଯ୍ୟ । ସୁତରାଂ ସବୁବେଳେ ସମାନଭାବରେ କୃତକାର୍ଯ୍ୟ ହେବା ଅସମ୍ଭବ । ସବୁ-କବିଙ୍କୁ ଶକ୍ତିସମ୍ପାତ ଭୋଗ କରିବାକୁ ପଡ଼େ । ରବୀନ୍ଦ୍ରନାଥଙ୍କ ସର୍ବଶେଷ ଲେଖାଗୁଡ଼ିକ ପାଠ କଲେ ତାହା ସହଜରେ ଜଣାପଡ଼େ । ମନେ ହୁଏ ସତେ ଯେପରି ପ୍ରଦୀପ ନିର୍ବାଣୋନ୍ମୁଖ ହୋଇ ଆସିଲାଣି । କବି ଭାବୀ ଚତୁର ଲୋକ ଥିଲେ । ଅବସାଦ ସମୟରେ ବୋଧହୁଏ ଉପନ୍ୟାସ

ଲେଖି ଲେଖନକଣ୍ଡୁର ଉପଶମ କରୁଥିଲେ । ସେ ପତ୍ର ନିଜେ ଲେଖିଛନ୍ତି—

"ଯେ ସୁରେ ବାନ୍ଧିଲେ ଏ ବୀଣାର ତାର,
ନାମିଯା ନାମିଯା ଗେଛେ କତବାର ।"
ହେ କବି, ତୋମାର ରଚିତ ରାଗିଣୀ ଆମି କି ଗାହିତେ ପାରି ?

ଏହିପରି କବିଙ୍କର ବାରମ୍ବାର ବେସୁରା ହୋଇଯିବାର କଥା । ସେପରି-ତରଙ୍ଗୀତମୟ ତାଙ୍କର ହୃଦୟର ଦଶା ଯଦି ଏପରି ହୁଏ, ତେବେ ସାଧାରଣ କବିଙ୍କ କଥା ଯେ ଖୁବ ଶୋଚନୀୟ, ଏହା ଅନୁମାନ କରିବା ସହଜ । କବି ବୋଧହୁଏ ମମତାର ନୟନରେ ଦେଖେ ବୋଲି ନିଜର ବାତ୍ସଲ୍ୟ ସ୍ନେହାଧିକ୍ୟବଶତଃ ନିଜର କବିତାର ଦୋଷ ତ୍ରୁଟି ଦେଖି ପାରେ ନାହିଁ । କାରଣ—'Love is blind' ଅର୍ଥାତ୍ ସ୍ନେହ ନିଜେ ଅନ୍ଧ । ସେ ତାର ଧୂଆ ମୂଳା ଅଧୂଆ ମୂଳା ସବୁତକ ସାହିତ୍ୟ-ବିପଣୀକୁ ଭେଟି ଦିଏ । ସାହିତ୍ୟବିପଣୀର ଚତୁର ଗ୍ରାହକଗଣ ସିନା ତାହାର ଦୋଷ ଗୁଣ ବାଛି, ଯଥାଯଥ ମୂଲ୍ୟ ନିର୍ଦ୍ଧାରଣ କରନ୍ତି । ସୁତରାଂ ଏହି ଚତୁର ଗ୍ରାହକମାନେହିଁ ସଙ୍ଗୀୟନ କଲେ ପ୍ରତ୍ୟେକ କବିଙ୍କର ପ୍ରତିଭା ଉଜ୍ଜ୍ୱଳତର ହୋଇ ଯାହି ପ୍ରକାଶ କରିବ । ହେୟାଂଶ କବଳରୁ ମୁକ୍ତ ହେଲେ ଶ୍ରେୟାଂଶଗୁଡ଼ିକର ସ୍ୱାଭାବିକ ମାଧୁର୍ଯ୍ୟ ସମସ୍ତେ ହୃଦୟଙ୍ଗମ କରି ପାରିବେ ।

କାବ୍ୟସଙ୍ଗୀୟିତା ଜଣେ ରସିକ ଓ ଭାବୁକଶ୍ରେଣୀର ଲୋକ ନ ହେଲେ ନ ଚଳେ । ସେ କବିଭାବାପନ୍ନ ଓ ରସପିପାସୁ ହେବା ଦରକାର । କବି ନିଜ ରଚିତ କବିତାର ଦୋଷ ଗୁଣ ଠିକ ଧରି ପାରନ୍ତି ନାହିଁ । ସୁସମାଲୋଚକ ସିନା ନିରପେକ୍ଷ ସୂକ୍ଷ୍ମଦୃଷ୍ଟିରେ ତାହା ଦେଖିବାକୁ କ୍ଷମ ହୁଅନ୍ତି । ବ୍ୟାସଦେବ ଶ୍ରୀ ଶ୍ରୀମଦ୍ଭାଗବତର କବି ହୋଇ ସୁଦ୍ଧା ଶୁକଦେବଙ୍କ ପରି ଭାଗବତର ରସଗ୍ରହଣ କରି ପାରି ନ ଥିଲେ । ଏହାହିଁ ଶ୍ରୀମୁଖର କଥା—

"ଅହଂ ବେଦ୍ମି, ଶୁକୋ ବେତ୍ତି, ବ୍ୟାସୋ ବେତ୍ତି ନ ବେତ୍ତି ବା
ଶ୍ରୀଧରଃ ସକଳଂ ବେତ୍ତି ଶ୍ରୀନୃସିଂହପ୍ରସାଦତଃ ।"

ମୋହର କହିବାର କଥା—ବାଲେଶ୍ୱରର ମୟୂରକଣ୍ଠୀ ଗ୍ରାମର ଭାଗବତର ନିଖିଳବ୍ୟାଖ୍ୟାକାରମୌଳିମଣ୍ଡନ ଶ୍ରୀମତ୍ ଶ୍ରୀଧରସ୍ୱାମୀ ଯେପରି ଭାଗବତର ଜ୍ଞାନ-ଭକ୍ତି-ସଙ୍ଗୀତରେ ଅମୃତଧାରା ପରିବେଷଣରେ ସିଦ୍ଧହସ୍ତ ଥିଲେ, ସେହିପରି ରସିକ-ଭାବୁକ ସାହିତ୍ୟରଥୀ କେହି ଆମ୍ଭ ଦେଶର କବିମାନଙ୍କ କବିତାର କେତୋଟି ଚୟନିକା ସଙ୍କଳନ କରି କାବ୍ୟରସ ପରିବେଷଣଦ୍ୱାରା ତାହାଙ୍କ ସାହିତ୍ୟର ତଥା ସାହିତ୍ୟରସପିପାସୁମାନଙ୍କର ଅଶେଷ କଲ୍ୟାଣ ସାଧନ କରି ପାରନ୍ତେ। ସୁକବିଶ୍ରେଣୀର ସାହିତ୍ୟରଥୀମାନଙ୍କ ବିଦ୍ୟମାନରେ ଅକବିଶ୍ରେଣୀର ଅର୍ଦ୍ଧରଥୀମାନଙ୍କୁ କାବ୍ୟଃସଂଗ୍ରହ୍ନର ଭାର ଦେଲେ ଫଳ ହେବ—

"ଶବରୀ ଶବରୀ ଶେଷେ ବଦରୀ ଚୟନେ
ମୁକ୍ତା ଫିଙ୍ଗି କରେ ଯଥା ଗୁଞ୍ଜାରେ ଆଦର।"

ଅଜ୍ଞାନକୃତ ଦୋଷର ସାତଖୁଣ ମାପ। ତାହା ନ ପାଇଲାଠାରୁ ହରିବଦାରିତକରୀର ଗଜମୁକ୍ତା ଫିଙ୍ଗି ଶବରୀ ବରକୋଳି ନେଇ ତାର ପେଟ ପୋଷେ। କିନ୍ତୁ ଜମିଦାରଘର ଅପାଣ୍ଡବା ମୂଲିଆ ଟୋକା ଯଦି ତାଙ୍କ କ୍ଷେତରୁ ଧାନଗଛଗୁଡ଼ିକ ଉପାଡ଼ି କେବଳ ବାଳୁଙ୍ଗାଗଛ ରଖିଅଛେ, ତେବେ ଉପାୟ କଣ? ସେଦିନ ଜଣେ କୃତବିଦ୍ୟ ସାହିତ୍ୟିକ ମଧୁସୂଦନଙ୍କ କବିତା ପଢ଼ି ସ୍ଥିର କଲେ—

ସାଧୁସୁଜନ ସଙ୍ଗତରେ
ଧନ୍ୟ ଯେ ଜନ ବାସ କରେ।

ଏହିପରି ନୀତିଗର୍ଭକ ରଚନାରେ ମଧୁସୂଦନ ସିଦ୍ଧହସ୍ତ ଥିଲେ। ତେଣୁ ସେ ଜଣେ ବଡ଼କବି, ସେଥିରେ ଆଉ ସନ୍ଦେହ କଅଣ? ଏପରି ସମାଲୋଚକ ବାସ୍ତବିକ କବିକୌରବ-କୁଳର ଶକୁନି ମାମୁଁ।

ଗନ୍ତବ୍ୟ ରାଜପଥ ଛାଡ଼ି ଗୋଟିଏ ଗଳିରାସ୍ତାରେ ପଡ଼ି ପ୍ରାୟ ବାଟବଣା ହେବାକୁ ବସିଥିଲି। କହୁଥିଲି, ଆମ ଦେଶର ସମାଲୋଚକମାନେ ପରିଶ୍ରମ ସ୍ୱୀକାର କରି ପୁଙ୍ଖାନୁପୁଙ୍ଖରୂପେ ଅଧ୍ୟବସାୟର ସହିତ ଗବେଷଣା

କରିବାକୁ ସୁବିଧା ନାହିଁ; କେବଳ ପଶ୍ଚିମବାସୀ ପଣ୍ଡିତଙ୍କ ପରି ଉପରେ ଉପରେ ଭାସି ବୁଲନ୍ତି। ପୁଣି ଏ ଯୁଗରେ କେବଳ ଅଳସଚିନ୍ତା ଯେ ଚମତ୍କାର ତାହା ନୁହେଁ, ବସ୍ତୁଚିନ୍ତା ତତୋଽଧିକ। ଏହିପରି ସହସ୍ର ଚିନ୍ତାର ବୋଝ ମସ୍ତକରେ ବହନ କରି କିଏ ବା ଲଳିତକଳାର ମାଧୁରୀ ଉପଭୋଗ କରିବାକୁ ସମୟ ପାଉଛି ? ସୁତରାଂ ସେମାନଙ୍କର ଜୀବନ-ସଂଗ୍ରାମର ତୀବ୍ରତାଦୃଷ୍ଟିରେ ଚମ୍ପୁକା ନିତାନ୍ତ ଦରକାର। କିନ୍ତୁ ସମାଲୋଚନାବିଭ୍ରାଟ ବା ଆଧୁନିକ ରୁଚିବୈଚିତ୍ର୍ୟର ଆଉ ଗୋଟିଏ କୌତୂହଳପୂର୍ଣ୍ଣ ଉଦାହରଣ ଦେବାର ଲୋଭ ସମ୍ବରଣ କରି ହେଉ ନାହିଁ। ନ ପଢ଼ି ସମାଲୋଚନା କରିବାଠାରୁ ଏକାବେଳକେ ଅନଭିଜ୍ଞ ଲୋକର ସର୍ବାଧିକାରଚର୍ଚ୍ଚା ଦୋଷାବହ। ଯେ ଯେଉଁ ବିଷୟରେ ଗଜମୂର୍ଖ ସେ ସେବିଷୟରେ ପ୍ରବୀଣ ବିଶେଷଜ୍ଞଙ୍କ ପରି ମତାମତ ପ୍ରକାଶ କରିବାଠାରୁ ବଳି ଅନ୍ୟାୟ କଅଣ ହୋଇ ପାରେ ? ଏହା ମଧ୍ୟ ଆମ ସମାଜର ଦୈନନ୍ଦିନ ଘଟଣା। ଏପରି ଧୃଷ୍ଟତା ଆମର ଜାତୀୟ-ଜୀବନକୁ କାଠଦଣ୍ଡ ଅନ୍ତଃସାରଶୂନ୍ୟ କରି ଦେଲାଣି। କୌଣସି ବରିଷ୍ଠ ପଦସ୍ଥ ବ୍ୟକ୍ତି କର୍ତ୍ତବ୍ୟାନୁରୋଧରେ ଦାତବ୍ୟ ଚିକିତ୍ସାଳୟ ପରିଦର୍ଶନକୁ ଯାଇ ଗୋଟିଏ ରୋଗୀକୁ ଦେଖି, ତତ୍ରତ୍ୟ ଅଷ୍ଟଧୁରନ୍ଧର ବହୁଦର୍ଶୀ ଚିକିତ୍ସକଙ୍କୁ ପଚାରିଲେ, "ଏ କି ରୋଗ ?" ସେ ଉତ୍ତର କଲେ, "ଏହାକୁ କାଲାଜ୍ୱର କହନ୍ତି।" ପ୍ରଶ୍ନକର୍ତ୍ତା ଜଣେ ଉଚ୍ଚପଦସ୍ଥ ବ୍ୟକ୍ତି ଓ ଡାକ୍ତରଙ୍କ ଉପରିସ୍ଥ କର୍ମଚାରୀ; ସୁତରାଂ ତାଙ୍କର ଅଧସ୍ତନ କର୍ମଚାରୀଙ୍କ ମନ୍ତବ୍ୟଟି ପୁରାପୁରି ଗ୍ରହଣ କରିନେଲେ କାଳେ ତାଙ୍କର ବଡ଼ପଣ କମିଯିବ, ତେଣୁ ସେ ସର୍ବଜ୍ଞଚୂଡ଼ାମଣିଙ୍କ ଆସନରୁ ହଠାତ୍ ଲମ୍ଫ ପ୍ରଦାନ କରି କହି ବସିଲେ, "ମୋତେ ତ କାଲାଜ୍ୱର ପରି ଲାଗୁ ନାହିଁ—କାଲାଜ୍ୱର ହେଲେ ମୁହଁଟା ଏପରି ଫଣଫଣ ହୋଇ ନାଲି ଦିଶୁଛି କାହିଁକି ?" ତାଙ୍କର କଥା ଶୁଣି ଓ ଧୃଷ୍ଟତା ଦେଖି ଡାକ୍ତର ସାହେବଙ୍କ ଅକଲ ଗୁଡ଼ୁମ୍। ଉତ୍ତର ଦେବେ କଅଣ ? ଏଣେ ତେଣେ ଅନାଇ ସହକର୍ମୀ ବନ୍ଧୁମାନଙ୍କଠାରୁ କିଛି ସଙ୍କେତର ଆଶା କଲେ। ଠିକ୍ ଏହି ସମୟରେ ଭାଷା ରଙ୍ଗରସପ୍ରିୟ

ବୃଦ୍ଧ ମେହେନ୍ଦ୍ରଙ୍କ ଅର୍ଦ୍ଧସ୍ଫୁଟ ସ୍ୱରରେ କହିପକାଇଲା, "ତେବେ କଅଣ ନାଲି ଜ୍ୱର ?" ସମସ୍ତେ ହସି ଉଠିଲେ, ସେତେବେଳକୁ ଉପସ୍ଥିତ କର୍ମବ୍ୟସ୍ତ ଅନ୍ୟ ରୋଗୀର ଶଯ୍ୟାପାଖକୁ ଯାଇ ସାରିଲେଣି ।

ଏହି ସବୁ କାରଣରୁ ସାହିତ୍ୟଜଗତରେ ଘୋର ଉଚ୍ଛୃଙ୍ଖଳତାର ସୃଷ୍ଟି ହୋଇଅଛି । ନିରପେକ୍ଷ ସହାନୁଭୂତିପୂର୍ଣ୍ଣ, ସହିଷ୍ଣୁ ଓ ନିଷ୍ଠାପର ସମାଲୋଚକ ନାହାନ୍ତି । ଅଧ୍ୟବସାୟ ଓ ନିଷ୍ଠା ନାହିଁ—କେବଳ ଆସ୍ଫାଳନ ଓ ପରାଧିକାରଚର୍ଚ୍ଚା ଓ ଅନଧିକାର ପ୍ରବେଶ । ନୂତନ-ପନ୍ଥୀ ଓ ପୁରାତନପନ୍ଥୀ ମଧ୍ୟରେ ବିଦ୍ୱେଷ, ବିଧିମାର୍ଗ (classicism) ଓ ରାଗମାର୍ଗ (Romanticism) ମଧ୍ୟରେ ଅସାମଞ୍ଜସ୍ୟ, ସନାତନ-ପନ୍ଥୀ ଓ ପ୍ରଗତିପନ୍ଥୀ ମଧ୍ୟରେ ମନୋମାଳିନ୍ୟ ।

## ପାର୍ବତୀକାବ୍ୟର ମୌଳିକତା—

ପୂର୍ବେ କହିଅଛି, ପାଶ୍ଚାତ୍ୟ ଜଗତର ଅଦୋଷଦର୍ଶୀ ଗୁଣଗ୍ରାହୀ ସମାଲୋଚକମାନେ କପରି ସେକ୍ସପିୟରଙ୍କ ଅପହରଣପ୍ରବୃତ୍ତି ସତ୍ତ୍ୱେ ତାଙ୍କ ପ୍ରତିଭାର ମୌଳିକ ଅଂଶଟି ଗ୍ରହଣ କରି ତାଙ୍କୁ ସର୍ବଶ୍ରେଷ୍ଠ କବିର ଆସନରେ ବସାଇ ପୂଜା କଲେ, କିନ୍ତୁ ଆମ ସମାଲୋଚକମାନେ କେବଳ ଛିଦ୍ରାନ୍ୱେଷଣରେ ବ୍ୟସ୍ତ । ସେମାନେ ରାଧାନାଥଙ୍କ ଚନ୍ଦ୍ରଭାଗା, ଉଷା ପ୍ରଭୃତିର ମୂଳକଥାବସ୍ତୁ ବିଦେଶୀ ସାହିତ୍ୟରୁ ଆନୀତ ବୋଲି ମହାଖପ୍ପା ଓ ପାର୍ବତୀର କଥାବସ୍ତୁ ଐତିହାସିକ ସତ୍ୟ ଉପରେ ସମ୍ପୂର୍ଣ୍ଣ ପ୍ରତିଷ୍ଠିତ ନୁହେଁ ବୋଲି ପାର୍ବତୀ କବିତା ପ୍ରତି ସେମାନେ ଭାରି ବୀତଶ୍ରଦ୍ଧ । ଚନ୍ଦ୍ରଭାଗା ଓ ଉଷାର କଥାବସ୍ତୁ ବାସ୍ତବିକ ପାଶ୍ଚାତ୍ୟ ଜଗତରୁ ଆମଦାନୀ କରା ହୋଇଛି । ସେଥିପାଇଁ କଅଣ ସମସ୍ତ ମହାଭାରତଟା ଯାକ ଅଶୁଦ୍ଧ ହୋଇଗଲା ? ସେପରି ଯୁକ୍ତିର ବାସ୍ତବିକ କୌଣସି ମୂଲ୍ୟ ଯଦି ଥାଆନ୍ତା, ତାହେଲେ ସେମାନେ ବିଶ୍ୱର ସେକ୍ସପିୟରଙ୍କୁ ତଳକଣ୍ଠା ଉପରକଣ୍ଠା ଦେଇ ମାରି ପକାଇ ସାରନ୍ତେଣି । ତାଙ୍କ ହିସାବରେ ସେକ୍ସପିୟର ତ କେବଳ ଚୋର ନୁହନ୍ତି, ଚୋରଙ୍କ ସର୍ଦ୍ଦାର—

ଡକାୟତଙ୍କ ଦଳପତି, ଦିନ ଦ୍ୱିପ୍ରହରେ ଚନ୍ଦ୍ରାଲୋକରେ ପଶି ସିନ୍ଧି କାଟିବା-ବାଲଙ୍କ ନେତା। କେବଳ କଥାବସ୍ତୁ ନୁହେଁ; ଭାବ, ଭାଷା ଓ ଚରିତ୍ର ସବୁ ସ୍କଟଙ୍କର ବୋଲାଇବସିଲେ କବି। ନିଜର ମୂଳଧନ ନାହିଁ, ମାରୱାଡ଼ିଙ୍କ ପୁଞ୍ଜିରେ ବୋଲାଇବସିଲେ ମହାଜନ। ଏକଥାଟି ଆମ ଦେଶର ଏମାନେ କିଷ୍ଟପୁ କିଷ୍ଟପୁ ଧରି ବସନ୍ତେ—ଏଥିରେ ସନ୍ଦେହ ନାହିଁ। ଭାଗ୍ୟକୁ ତାଙ୍କର ଭାଗ୍ୟମୀମାଂସା ହେଲା କଳାପାଣି ଅପରପାର୍ଶ୍ୱସ୍ଥ ପାଶ୍ଚାତ୍ୟ ଜଗତର ମହୋଦାର ସୁଧୀସମାଜରେ। ସେମାନେ କହିଲେ—ପ୍ରତିଭାର ମହତ୍ତ୍ୱର ପରିମାପକ ହେଉଛି ସେହି ପ୍ରତିଭାର ଋଣଗ୍ରହଣ କରି ପାରିବାର କ୍ଷମତା। ନନ୍ଦନକାନନରେ ଅସଂଖ୍ୟ ଫୁଲ ଫୁଟି ଉଦ୍ୟାନ ସୌରଭରେ ଆମୋଦିତ ହୋଇ ରହିଛି; ମଧୁକର ବିନା ସେ ମଧୁ ଆହରଣର ଅଧିକାରୀ ଏହି ବିଶ୍ୱସୃଷ୍ଟିରେ ଆଉ କେହି ଅଛନ୍ତି ? ସେହିପରି କବି-ମଧୁକର ବିନା କାବ୍ୟନନ୍ଦନବନରୁ କାବ୍ୟକୁସୁମାବଳୀର ମଧୁଚୟନରେ ଆଉ କାହାର ଅଧିକାର ନାହିଁ। କବି ଦ୍ରଷ୍ଟା ଓ କବି ସ୍ରଷ୍ଟା। ନିଖିଳ ବିଶ୍ୱଜଗତରେ କେଉଁଠାରେ କେଉଁ ମାଧୁର୍ଯ୍ୟ, କେଉଁ ସୌନ୍ଦର୍ଯ୍ୟ, କେଉଁ ଲାବଣ୍ୟ ଖେଳା କରୁଛି ସେ ତାଙ୍କର କବିଚକ୍ଷୁଦ୍ୱାରା ତାହା ଦେଖି ଓ କାବ୍ୟକଳାର ସାହାଯ୍ୟରେ ସେହି ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ଲାବଣ୍ୟଧାରାକୁ ଭାଷାରେ ପ୍ରକାଶ କରି ଜନସାଧାରଣର ଉପଭୋଗ ଲାଗି ସଚେଷ୍ଟ ହୁଏ। ଭାଷାର ମାଧୁର୍ଯ୍ୟ, ସୌନ୍ଦର୍ଯ୍ୟ ଓ ପ୍ରସାଦଗୁଣକୁ ସମ୍ପୂର୍ଣ୍ଣ ହୃଦୟଙ୍ଗମ କରି ଅନୁରୂପ ଭାଷାର ସାହାଯ୍ୟରେ ନିଜର ଉପଲବ୍ଧ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟକୁ ମୂର୍ତ୍ତିଦାନ କରେ। ଏହାହିଁ କବିଙ୍କ କୃତି।

ରାଧାନାଥ କଥାବସ୍ତୁ ଚୋରି କରିଛନ୍ତି ସତ୍ୟ, କିନ୍ତୁ ତାହା ଛଡ଼ା ତାଙ୍କର କବିସୁଲଭ ରଚନାଶୈଳୀ, କଳ୍ପନାବିଳାସ ଓ ବର୍ଣ୍ଣନାର ଛଟା, କି ବାକ୍‌ବିନ୍ୟାସଚାତୁରୀ ପ୍ରଭୃତି ଅଛି କି ନାହିଁ ଏହାହିଁ ସମାଲୋଚକର ଦ୍ରଷ୍ଟବ୍ୟ। ଅପହୃତ ନୀରସ ଶୁଷ୍କ କଥାବସ୍ତୁର

ସୃଷ୍ଟି ପ୍ରସ୍ତୁତ କରି ସେଥିରେ କ କ ରଙ୍ଗ ପ୍ରତିଫଳିତ କରି ଓ କିପରି ମୂର୍ତ୍ତିଟିକୁ ସଜୀବ ଓ ସୁନ୍ଦର କରି ପାରିଛନ୍ତି, ତାହାହିଁ ସମାଲୋଚକର ଦ୍ରଷ୍ଟବ୍ୟ । କବିଙ୍କର ମୌଳିକତା ତାଙ୍କର କଳ୍ପନାବିଳାସରେ, ଚରିତ୍ରଚିତ୍ରଣରେ ଓ ଶବ୍ଦବିନ୍ୟାସରେ ଏବଂ ପ୍ରାକୃତିକ ସୌନ୍ଦର୍ଯ୍ୟର ଉପଭୋଗ ଓ ଅଭିବ୍ୟକ୍ତି ଏବଂ ପରିବେଶନରେ—କେବଳ କଥା-ବସ୍ତୁରେ ନୁହେଁ । ତେଣୁ କଥାବସ୍ତୁଟି ଅନ୍ୟଠାରୁ ଗ୍ରହଣ କରିଛନ୍ତି କହି ତାଙ୍କର କବିପ୍ରତିଭାକୁ ଖର୍ବ କରିବାର ଚେଷ୍ଟା ସାହିତ୍ୟର ଭବିଷ୍ୟତ୍ ପକ୍ଷରେ ଶୁଭଙ୍କରୀ ନୁହେଁ । ଏପରି ଅପଚେଷ୍ଟା ସମାଲୋଚନା ନାମରେ ସାହିତ୍ୟଜଗତରେ ବିଷବର୍ଷଣ କରି ସାହିତ୍ୟକ୍ଷେତ୍ରକୁ ଅନୁର୍ବର ମରୁଭୂମିରେ ପରିଣତ କରେ । ମହାଯାତ୍ରା ପରି ମହାଗୀତକୁ ୰ବୈତରଣୀ ଙ୍କୁଆ ବିଦ୍ରୂପାତ୍ମକ ବ୍ୟଙ୍ଗ କବିତାଟିଏ ଲେଖି ଉଡ଼ାଇ-ଦେବାକୁ ବସିଥିଲେ । କ ରସଜ୍ଞ ସମାଲୋଚକ ସତେ ! ବାଳୁଙ୍ଗା ଉପାଡ଼ିବାକୁ ଯାଇ ବାଳୁଙ୍ଗା ବୋଲି ୰ାଛୁ ବାଛୁ କଳାମୁଣ୍ଡିଆ ଧାନଗଛଗୁଡ଼ାକ ମୂଳପୋଛ କରି ଉପାଡ଼ି ପକାଇଲେ ସିନା ଚାଷୀ ବର୍ଷଟାଗୋଟେ ପଚ୍ଛେଇଯିବ; ମାତ୍ର ଅପକବିତା ବୋଲି ମହାଯାତ୍ରା ଭଳି ନବଯୁଗପ୍ରବର୍ତ୍ତକ କାବ୍ୟକଳିକାଟିକୁ ଯଦି ସେ ତାଙ୍କ ବିଷମୟ ବିଷମଫୁତ୍କାରରେ ଜାଳିଦେଇଥାନ୍ତେ, ତାହାହେଲେ ଉତ୍କଳଭାରତୀଙ୍କ ଗଳଶୋଭି କୁସୁମମାଳାରୁ ବିଶିଷ୍ଟ କୁସୁମଟିର ସ୍ଥାନ କିଏଣ ସହଜରେ ପୂରଣ ହୁଅନ୍ତା ? ସେଥିପାଇଁ କହେଁ, ସମାଲୋଚନାର ସହାନୁଭୂତିପୂର୍ଣ୍ଣ ସହିଷ୍ଣୁତା ତ ନାହିଁ, ଅପରନ୍ତୁ ବିଦ୍ୱେଷଜର୍ଜରିତ ଛିଦ୍ରାନ୍ୱେଷଣର ସୀମା ନାହିଁ ।

ପାଟଣାକାବ୍ୟରେ କଥାବସ୍ତୁର ଐତିହାସିକ ଭିତ୍ତିର ଅନୁସନ୍ଧାନ କାବ୍ୟରସାନୁସନ୍ଧାନଶୀଳ ସୁସମାଲୋଚକ ପକ୍ଷରେ ଶୋଭନୀୟ ନୁହେଁ । କାବ୍ୟ ଇତିହାସ ନୁହେଁ, କବି ଇତିହାସବେତ୍ତା ନୁହନ୍ତି । କାବ୍ୟର ନାୟକ ନାୟିକା ଇତିହାସ ବା ପୁରାଣପ୍ରସିଦ୍ଧ ନରନାରୀ ହୋଇ ପାରନ୍ତି କିମ୍ବା କାହାରି କଳ୍ପନାବିଳାସ ମାତ୍ର ହୋଇ ପାରନ୍ତି କିମ୍ବା

ହୁଇର ଏକ ବିଚିତ୍ର ସମନ୍ୱୟ ମଧ୍ୟ ହୋଇ ପାରନ୍ତି—ଅର୍ଥାତ୍ କବି ଐତିହାସିକ ନରନାରୀଙ୍କ ଘଟଣାବହୁଳ ଜୀବନୀରେ ନିଜ ଉଦ୍ଦେଶ୍ୟ ସାଧନର ଅନୁକୂଳ କିଛି କିଛି ପରିବର୍ତ୍ତନ ମଧ୍ୟ କରି ପାରନ୍ତି। ସେଥିରେ କବିଙ୍କର ନ୍ୟାଯ୍ୟ ଦାବୀ ଅଛି ଓ ଥିବା ଉଚିତ୍। ମନେ କରାଯାଉ ପାରିବାରିକାବ୍ୟରେ 'କ' ନାୟକ ଓ 'ଖ' ନାୟିକା—'ଖ'ର ସ୍ୱାମୀ 'କ'ଙ୍କର ଔରସରେ ପ୍ରଥମ ଗର୍ଭରୁ 'ଗ' ନାମ୍ନୀ କନ୍ୟାର ଜନ୍ମ। 'କ' ସ୍ୱଦ ପିତା ହୋଇ 'ଖ' କନ୍ୟାଙ୍କ ସଙ୍ଗରେ ଜାବ୍ୟକଳ୍ପିତ ଦୁର୍ବ୍ୟବହାରରେ ଦୋଷୀ ହୁଅନ୍ତି 'ଖ' ପତିପରାୟଣା ହନୁରମଣୀ ହୋଇ 'କ'ରୁ ହତ୍ୟା କଲେ। ତାହାର ଅନେକ କାରଣ ମଧ୍ୟ ବର୍ଣ୍ଣନା କରାଯାଇଛି ଓ ନିଜେ ମଧ୍ୟ ଆତ୍ମହତ୍ୟା କଲେ। ସେଥିରେ କାହାର ପାପ କେତେ, ସେଥିର ହିସାବ କବି ପାଠକଗୁଡ଼ିକ ଉପରେ ଛାଡ଼ି ଦେଇ ନିଜେ ନୀରବ ହେଲେ। କେବଳ ଘଟଣାଟି ସ୍ପଷ୍ଟରେ ଦେଖିଥିଲ ପରି କହିଗଲେ। କହି ଜାଣିଲେ କଥା ସୁନ୍ଦର, ବାନ୍ଧି ଜାଣିଲେ ମଥା ସୁନ୍ଦର। ତେବେ କବି କହିଜାଣିଲେ କି ନାହିଁ ଓ ତାଙ୍କ କହିବା ପଣ, ଭାବ ଭଙ୍ଗୀ ଆମ୍ଭମାନଙ୍କ ମନକୁ ପାଇଲା କି ନାହିଁ—ତାଙ୍କର ବର୍ଣ୍ଣନାଗୁଡ଼ିକ ପ୍ରସାଦଗୁଣବିଶିଷ୍ଟ ହୋଇ ହୃଦୟସ୍ପର୍ଶୀ କଲା କି ନାହିଁ—ସେ ଯେଉଁ ରସର ଅବତାରଣା କଲେ, ରସଶାସ୍ତ୍ର ଅନୁସାରେ ତାଙ୍କର ସେ ରସ ପୂର୍ଣ୍ଣ ପରିପାକ ହୋଇ, ସୃଷ୍ଟି, ସ୍ଥିତି ଓ ପରିଣତିରେ ପୂର୍ଣ୍ଣ ମୂର୍ତ୍ତିମାନ ହେଲା କି ନାହିଁ—ସେପରି କବିତାହାରା ଲଳିତକଳାସୃଷ୍ଟିରେ କବି କିଛି ନୈପୁଣ୍ୟ ହାସଲ କଲେ କି ନାହିଁ—ଏହାହିଁ ଦେଖିବାର କଥା। ତାହା ବିଚାର ନ କରି ଯଦି କହି ବସୁଁ ଏ କଥାଟି ମାଦଳାପାଞ୍ଜିରେ ନାହିଁ କି ବିରଞ୍ଚିପାଞ୍ଜିରେ ନାହିଁ, ଇତିହାସରେ ନାହିଁ, କି ପୁରାଣରେ ନାହିଁ—ତେବେ ତାକୁ ଦୂରେ ଥୋଇ ଅଲଗା ହୁଅ—ତାକୁ ଦେଖିଲେ ପାପ, ଛୁଇଁଲେ ପାପ, ପଢ଼ିଲେ ମହାପାପ—ଗୃହ୍ୟସୂତ୍ର କଲେ ଯାଇଁ ରକ୍ଷା। ଏପରି ସମାଲୋଚନାକୁ ଗବେଷଣା ନ କହି ଧାତୁଗତ ଅର୍ଥଗ୍ରହଣ ପୂର୍ବକ "ଗୋ+ଏଷଣା"

ଅର୍ଥାତ୍ ଗୋରୁ ଖୋଜିବୁଲିବା ବୋଲି କହିବା ଶ୍ରେୟସ୍କର । ଐତିହାସିକ ସତ୍ୟ ଉପରେ କବିତାର ଗୌରବସୌଧ ନିର୍ମିତ ହୋଇ ନାହିଁ । ଚିଲିକା କବିତାରେ ରାଧାନାଥଙ୍କ ଭୌଗୋଳିକ ବିଷୟ ଅନୁସନ୍ଧାନ କରିବା ସମୀଚୀନ କି ? କବି ତ ଭୂତତ୍ତ୍ୱବିତ୍ ନୁହନ୍ତି । ଯଦି କେହି କବିଙ୍କର ଭୌଗୋଳିକ ଜ୍ଞାନର ଗଭୀରତା ମାପିବାକୁ ଯାଆନ୍ତି, ସେ ନିରାଶ ହେବେ ନାହିଁ କି ? କବି କହିଲେ—

"ଯହିଁ ବସି ହ୍ରଦବାସିନୀ ଅମରୀ
ସ୍ୱଚ୍ଛ ମୁକ୍ତାଫଳେ ବାନ୍ଧନ୍ତି କବରୀ ।"

ଯଦି କେହି କୌତୂହଳାକ୍ରାନ୍ତ ହୋଇ ସ୍ୱଚ୍ଛମୁକ୍ତାଫଳରେ ଗଭ୍ରମଣ୍ଡନ କରୁଥିବା ଜଳଦେବୀଙ୍କୁ ଚିଲ୍‌କାର ଏପାଖରୁ ସେ ପାଖଯାଏ ଖୋଜିବୁଲନ୍ତି ସେମାନେ ତ କବିଙ୍କୁ ଘୋର ମିଥ୍ୟାବାଦୀ କହି ନିରାଶ ହେବେ । ଅହୋ କି ସମାଲୋଚନା-ବିଡ଼ମ୍ବନା ସତେ !

ପାର୍ବତୀରେ କବିଙ୍କର କାବ୍ୟପ୍ରତିଭାର ଗୋଟିଏ ବିଶିଷ୍ଟ ବିକାଶ ଖୁବ ପ୍ରଣିଧାନଯୋଗ୍ୟ । କବି ତାଙ୍କର ଅନ୍ୟାନ୍ୟ କବିତାରେ ବହିଃପ୍ରକୃତିର ସୌନ୍ଦର୍ଯ୍ୟ ଆସ୍ୱାଦନ କରି ତନ୍ମୟ ହୋଇଯାଇଛନ୍ତି । ମନୁଷ୍ୟ ହୃଦୟର ଅଭ୍ୟନ୍ତରୀଣ ରହସ୍ୟ ଉଦ୍‌ଘାଟନରେ ମନୋଯୋଗ ଦେଇ ନାହାନ୍ତି । କୌଣସି ସ୍ଥଳରେ ବହିଃପ୍ରକୃତି ସଙ୍ଗରେ ମନୁଷ୍ୟ-ହୃଦୟର ନିଗୂଢ଼ ସମ୍ପର୍କର କିଛି ଆଭାସ ମାତ୍ର ଦେଇଅଛନ୍ତି । ଏମନ୍ତ କି ମହାଯାତ୍ରାରେ ଚରିତ୍ରଚିତ୍ରଣରୁ ଅବସର ଗ୍ରହଣ କରି ସେହି ଅବସରକୁ ମଧ୍ୟ ଅପବ୍ୟୟିତ କରି ଅନ୍ୟ ମୋହରେ ପଡ଼ି କବିପ୍ରତିଭାକୁ ନିୟୋଜିତ କରିଅଛନ୍ତି । ଚରିତ୍ରଚିତ୍ରଣରୂପ ଜଟିଳ ବ୍ୟାପାରରେ ହସ୍ତକ୍ଷେପ କରିବା ଭଳି ସାହସ ନ ଥିଲା ପରି ସେ ବର୍ଣ୍ଣନାରସରେ ତନ୍ମୟ ହୋଇ ରହିଅଛନ୍ତି ।

କିନ୍ତୁ ପାର୍ବତୀକାବ୍ୟରେ ସେ ସେହି ଦୁରୂହ ବ୍ୟାପାରରେ ମନୋ-ନିବେଶ କରି ଶେଷ ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ରହି ପାରି ନାହାନ୍ତି । ପାର୍ବତୀ-କାବ୍ୟକୁ ଅସମ୍ପୂର୍ଣ୍ଣ ରଖି ସେ ଅନ୍ୟାନ୍ୟ କବିତାରେ ହସ୍ତକ୍ଷେପ କରିଅଛନ୍ତି ।

ପାର୍ବତୀଙ୍କୁ ଦେଖି ନ କରି ଅନ୍ୟମନସ୍କ ହେଲେ କିପରି ? ମୋର ମନେ ହୁଏ,
ପାର୍ବତୀକାବ୍ୟ ରଚନାରେ ହାତ ଦେଇ ସେ ମନୁଷ୍ୟହୃଦୟର ଅତି ଗମ୍ଭୀର-
ତମ ପ୍ରଦେଶର ଅସୂର୍ଯ୍ୟଂପଶ୍ୟ ଅଂଶଗୁଡ଼ିକର ସନ୍ଧାନ ପାଇ ମୁହ୍ୟମାନ
ହୋଇଗଲେ । ଇୟାଗୋ ପ୍ରମୁଖ ନରପିଶାଚମାନଙ୍କ ହୃଦୟନିହିତ ଭୈରବ
ରୌରବରେ ଜନ୍ମିବ ଦେଇ ବିଶ୍ୱବିଜେତାର ଆସନ ଅଳଙ୍କୃତ କରିବା
ଭଳି ଶକ୍ତି ଓ ସାମର୍ଥ୍ୟ ତାଙ୍କର ବୋଧହୁଏ ନ ଥିଲା । ସେ ଧର୍ମପୁତ୍ରଙ୍କ
ପରି ଦୂରରୁ ନରକଦର୍ଶନ କଲାକ୍ଷଣି ଉପ୍ତବହୁଳଚିତ୍ତରେ ଫେରିଲେ ।

ପାର୍ବତୀକାବ୍ୟରେ କବି କାବ୍ୟଜଗତରେ ଗୋଟିଏ ଅସାଧ୍ୟସାଧନରେ
ବ୍ରତୀ ହୋଇଥିଲେ । ପାର୍ବତୀଙ୍କ ହୃଦୟର ଭାବସନ୍ଧିକୁ ବିଶ୍ଲେଷଣ କରି
ତାହାର ଗୋଟିଏ କଳାସୁଲଭ ଚିତ୍ର ଅଙ୍କନ କରିବା କବିଙ୍କର ଉଦ୍ଦେଶ୍ୟ
ଥିଲା । ସନାତନଧର୍ମପନ୍ଥାରେ ପତି ସତୀ ସାଧ୍ୱୀ ଆର୍ଯ୍ୟରମଣୀର ପରମଗୁରୁ,
ପୁଣି ଆଜ୍ଞା ଗୁରୂଣାଂ ହି ଅବିଚାରଣୀୟା । ଶ୍ରୀମଦ୍‌ଭାଗବତ କହନ୍ତି
"ଦୁଃଶୀଳୋ ଦୁର୍ଭଗୋ ବୃଦ୍ଧୋ ଇତ୍ୟାଦି ।" ଏପରି ସ୍ଥଳରେ ଦାରୁଣଦୈବ-
ଦୁର୍ବିପାକରୁ ଅବସ୍ଥା ବିପର୍ଯ୍ୟୟରେ ପଡ଼ି, ପତିବ୍ରତା ଆର୍ଯ୍ୟରମଣୀକୁ
ପତିହତ୍ୟାରୂପ ମହାପାତକ କରିବାକୁ ହେଲା । ଏହାଠାରୁ ବଡ଼ ବିପଦ
ମନୁଷ୍ୟ ଉପରେ ପଡ଼ି ପାରେ କି ? ସେ ପୁଣି ଜଣେ ଅବଳା ମାତ୍ର । ବିଷ୍ଣୁକଳାରେ
ଜନ୍ମି ବିଷ୍ଣୁଙ୍କ ଅବତାରରୂପେ ପରିଗଣିତ ପରଶୁରାମଙ୍କୁ ଥରେ ଏଭଳି
ସଙ୍କଟରେ ପଡ଼ିବାକୁ ହୋଇଥିଲା । ଏକ ଦିଗରେ ପରମସ୍ନେହମୟୀ
ଅତିପବିତ୍ରହୃଦୟା ଓ ସମ୍ପୂର୍ଣ୍ଣରୂପେ ନିର୍ଦ୍ଦୋଷା ଗର୍ଭଧାରିଣୀ ମାତା ଏବଂ
ଅପର ଦିଗରେ ମାତାଙ୍କ ପରମଗୁରୁ ଅତିଦୋଷଦର୍ଶୀ ଯମଦଗ୍ନି ନାମଧେୟ
ଯମଙ୍କ ଦ୍ୱିତୀୟ ସଂସ୍କରଣରୂପୀ ସ୍ୱୀୟ ପିତୃଦେବ । ଗୋହତ୍ୟା ବ୍ରହ୍ମହତ୍ୟା
—ମଧ୍ୟରେ ସୂଚ୍ୟଗ୍ରପରିମିତ ତୃତୀୟ ସ୍ଥାନ ନାହିଁ । ଏଆଡ଼େ କୁମ୍ଭୀପାକ
ଓ ସେଆଡ଼େ ରୌରବ । ତ୍ରିଶଙ୍କୁର ଅବସ୍ଥା ଏହାଠାରୁ ଢେର ଭଲ ।
କୌଶଲ୍ୟାର ପ୍ରେତମ୍ଳାନମୁଖରୁ ପ୍ରାଣାଧିକା କନ୍ୟାର ଦାରୁଣ ଦୁଃଖର
କାହାଣୀ ଶୁଣି ଅଭିନ୍ନ-ସୁଖୈଶ୍ୱର୍ଯ୍ୟର କୋଳରେ ଲାଳିତା ପାଳିତା
ଉତ୍କଳେଶ୍ୱରଙ୍କ ପଟ୍ଟମହିଷୀ ପାର୍ବତୀଙ୍କ ଦଶା ଅଜି ଟିକେ ସେହିପରି । ସ୍ନେହମୟୀ

ପିତାଙ୍କ ପ୍ରେତାତ୍ମାମୁଖରୁ ତାଙ୍କର ଅକାଳବିୟୋଗର ମହାଶୋଚନୀୟ କାରଣଟି ଅବଗତ ହୋଇ ସେକ୍ସପିୟରଙ୍କ ହେମଲେଟ ମଧ୍ୟ ସେହିପରି ସଙ୍କଟାପନ୍ନ ଅବସ୍ଥାର ସମ୍ମୁଖୀନ ହୋଇଥିଲେ । ଓଥେଲୋ ମଧ୍ୟ ନରପିଶାଚ-ମୁଖରୁ ନିଜ ପ୍ରାଣପ୍ରତିମାର ବିରୁଦ୍ଧରେ କୁତ୍ସାରଟନା ଶୁଣି ଠିକ ସେହିପରି ବିଷମ ସଙ୍କଟରେ ପଡ଼ି ଅଧୀର ହୋଇ ପଡ଼ିଥିଲେ । ପାର୍ବତୀଙ୍କ ହୃଦୟର ଏ ଭାବଗ୍ରାବଲ୍ୟକୁ ବିଶ୍ଳେଷଣ କରି ତାହାର ଅନ୍ତର୍ଗୂଢ଼ ରହସ୍ୟଟିର ଚିତ୍ର ଅଙ୍କନ କରିବା କେଡ଼େ କଠିନ ତାହା କେବଳ ଏଭୋନଜିଗୀଷୁ ଲିନ-ବିହାରୀ କ୍ଷଣଜନ୍ମା ନାଟ୍ୟଚୂଡ଼ାମଣିଙ୍କୁ ସମ୍ୟକ୍ ଜଣା ଥିଲା । ରାଧାନାଥ ଆଜି ତାହାହିଁ କରିବାକୁ ବଦ୍ଧପରିକର ହେଲେ । ସେକ୍ସପିଅରସୁଲଭ ଅଘଟନ-ଘଟନ-ପଟୀୟସୀ ପ୍ରତିଭା ତାଙ୍କର ଥିଲା କି ନା ଏବଂ ସେ ଏହି ଅସାଧ୍ୟ-ସାଧନ-ବ୍ୟାପାରରେ କେତେଦୂର କୃତିତ୍ୱ ଅର୍ଜନ କଲେ, ତାହା ତାଙ୍କର ଅସମ୍ପୂର୍ଣ୍ଣ କାବ୍ୟରେ ସମ୍ପୂର୍ଣ୍ଣ ବିଗ୍ରହସହ କି ନା ଭାବିବା ଆଗରୁ ଏତିକି କହିଲେ ଯଥେଷ୍ଟ ହେବ ଯେ, ସେ ଏପରି ଅନନ୍ୟସୁଲଭ ମହତୀ ଚେଷ୍ଟାରେ ବ୍ରତୀ ହୋଇ ନିଜ କବିପ୍ରତିଭାର ଗୌରବ ସହସ୍ରଗୁଣ ବଢ଼ାଇ ଅଛନ୍ତି । ରବୀନ୍ଦ୍ରଙ୍କ କଥାରେ

> "ଯେ ଫୁଲ ନା ଫୁଟିତେ, ଝରେଛେ ଧରଣୀତେ,
> ଯେ ନଦୀ ମରୁପଥେ ହାରାଲ ଧାରା
> ଜାନି ହେ ଜାନି ତାଓ ହୟନି ହାରା ।"

ଏହି ଅଭିନବ ଉଦ୍ୟମର ଫଲ୍‌ଗୁଧାରା ଉତ୍କଳ-ବାଣୀକୁଞ୍ଜର ବିଶାଳ ସାହାରାଖଣ୍ଡକୁ ଉର୍ବର କରୁ, ମା ସାରଳାଙ୍କ ଶ୍ରୀଚରଣରେ ଏତିକି ମାଗୁଣି । ସେତୁବନ୍ଧ-ବନ୍ଦନ-ସୁନିପୁଣ ବିକାଶୀମାନଙ୍କ ଦକ୍ଷତା ସମ୍ମୁଖରେ କ୍ଷୀଣପ୍ରାଣ ଗୁଣ୍ଡିଚର କୃତ୍ୟ ଅତି ନଗଣ୍ୟ ହେଲେହେଁ ମର୍ଯ୍ୟାଦାପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ଗୁଣ୍ଡିଚର ସ୍ୱତଃପ୍ରବୃତ୍ତ କର୍ମନିଷ୍ଠାର ମର୍ଯ୍ୟାଦା ରକ୍ଷା କରି ତାହାକୁ ତ ଆଶୀର୍ବାଦ କରିଥିଲେ । କର୍ମଠାରୁ କର୍ମନିଷ୍ଠାର ମୂଲ୍ୟ ଢେର ବେଶୀ—କର୍ମପ୍ରେରଣାର ମାହାତ୍ମ୍ୟହିଁ କୃତକର୍ମର ମୂଲ୍ୟ ନିର୍ଦ୍ଧାରଣ କରେ ।

ପାର୍ବତୀ ଆଦର୍ଶ ରମଣୀ, ପତିବ୍ରତା ଓ ପତିଙ୍କ ସହଧର୍ମିଣୀ—ପୁଣି ସ୍ନେହମୟୀ ଜନନୀ—ପରିଶେଷରେ ବିଶାଳ ସାମ୍ରାଜ୍ୟର ପ୍ରକୃତିପୁଞ୍ଜର ବାତ୍ସଲ୍ୟମୟୀ ପାଳନକାରିଣୀ । ପତିଙ୍କ ଅଯୋଗ୍ୟତାରୁ ରାଜଲକ୍ଷ୍ମୀରୂପେ ତାଙ୍କ କର୍ତ୍ତବ୍ୟର ପରିଧି ବିଶେଷ ପରିସର ଲାଭ କରିଅଛି । ସହଧର୍ମିଣୀ ହୋଇ ପତିଙ୍କୁ କର୍ତ୍ତବ୍ୟପଥକୁ ଆଣିପାରୁ ନାହାନ୍ତି । ତାଙ୍କର ଅତ୍ୟାଚାର ଓ ଉତ୍ପୀଡ଼ନ ସହିଷ୍ଣୁତାର ସୀମା ଲଙ୍ଘନ କରି ବସିଲାଣି । ସ୍ତ୍ରୀପୁ ଅମ୍ବିକାଙ୍କ ପ୍ରତି ତାଙ୍କର ପୈଶାଚିକ ବ୍ୟବହାର ତାହାର ସାକ୍ଷୀ । ପୁଣି ରାଜ୍ୟ ପରେ ରାଜ୍ୟ ଜୟ କରି ରାଜକନ୍ୟା ଓ ରାଜଲକ୍ଷ୍ମୀମାନଙ୍କୁ ମଧ୍ୟ ନିର୍ଯ୍ୟାତିତ କରିବାରେ ଲାଗିଛନ୍ତି । ଏହିପରି ବିଷମ ସଙ୍କଟରେ ପଡ଼ି ପାର୍ବତୀ ନିଜ ପତିଙ୍କୁ ହତ୍ୟା କରିବାକୁ ବାଧ୍ୟ ହେଲେ । ଏବେ ପତିହତ୍ୟାପାପରୁ ସେ କେଉଁ ନରକକୁ ଗଲେ ଏବଂ ସେ ନରକରେ ସେ କି କି ଯନ୍ତ୍ରଣା ଭୋଗ କଲେ ସେ ସବୁର ବ୍ୟବସ୍ଥା କବି-କୁଳଦେବତା ଚିତ୍ରଗୁପ୍ତଙ୍କ ନିପୁଣ ହସ୍ତରେ ନ୍ୟସ୍ତ କରି ଆଶ୍ୱସ୍ତ ହେଲେ । କବି ଦାର୍ଶନିକ ନୁହନ୍ତି, କି ବ୍ୟବସ୍ଥାପକ, କି ବ୍ୟବହାରାଜୀବ ମଧ୍ୟ ନୁହନ୍ତି; ସେ ସେ ଖବର ନେବେ କିପରି ? କେବଳ ପାର୍ବତୀ କି ଅବସ୍ଥାରେ କି ମନୋବୃତ୍ତି ନେଇ କି ସଙ୍କଟରେ ପଡ଼ି ଏପରି ଅସାଧ୍ୟ ସାଧନ କଲେ, କବି ତାହାହିଁ ସ୍ୱଚକ୍ଷୁରେ ଦେଖିଲାଭଳି କହିଗଲେ । ପାର୍ବତୀଙ୍କ ଦୁଃଖରେ ତାଙ୍କର ହୃଦୟତନ୍ତ୍ରୀ ଯେପରି ବ୍ୟଥିତ ହୋଇଥିଲା, ଆମ୍ଭ-ମାନଙ୍କର ହୃଦୟବୀଣାଟିକୁ ଠିକ ତାହାରି ସମବେଦନାର ସ୍ୱରରେ ବାନ୍ଧି ଦେବାର ଚେଷ୍ଟା କଲେ । ଏହାକୁହିଁ ଭାବପ୍ରକାଶ ବା କଳାବିଳାସ ବା କବି ଐନ୍ଦ୍ରଜାଲିକର କାଉଁରୀପରଷ କୁହାଯାଏ । କବି କେତେଦୂର ସାଫଲ୍ୟମଣ୍ଡିତ ହୋଇଛନ୍ତି, ତାହା କହିବାରେ, ତାହାହିଁ ବିଚାର୍ଯ୍ୟ । ଏ କଥାଟା ମାଦଳାପାଞ୍ଜିରେ ନାହିଁ କି ବିରଞ୍ଜିପାଞ୍ଜିରେ ମଧ୍ୟ ନାହିଁ, ରହିବା ଉଚିତ ନୁହେ । ଏହା ଯେ କବିଙ୍କ କଳନା-ପାଞ୍ଜିରେ ଅଛି ଏହାହିଁ କହିଲେ ଯଥେଷ୍ଟ ହେବ ।

# ଦୃଶ୍ୟକାବ୍ୟର ବିଶିଷ୍ଟତା

ଦୃଶ୍ୟକାବ୍ୟ ବା ନାଟକ (Drama) ତଥା ଉପନ୍ୟାସ ଏବଂ ଗଳ୍ପ ବା କାହାଣୀ ସାହିତ୍ୟର ଗୋଟିଏ ଗୋଟିଏ ଅଙ୍ଗବିଶେଷ । ଏମାନେ କେହି ବାସ୍ତବ ବା ଐତିହାସିକ ଘଟନାକୁ ମୁଖ୍ୟରୂପେ ଆଶ୍ରୟ କରି ରଚିତ ହୁଅନ୍ତି ନାହିଁ । କଳନା ବିଳାସ, ବିଶୁଦ୍ଧ ନିରବଲମ୍ବ ମନଃକଳ୍ପିତ ଭାବଧାରାହିଁ ଏମାନଙ୍କର ପ୍ରାଣ । ବାସ୍ତବ ଜଗତର ପ୍ରତ୍ୟକ୍ଷମାନ ପୃଥିବୀର ବାସିନ୍ଦା ନରନାରୀମାନଙ୍କର ବାସ୍ତବ ଓ ଐତିହାସିକ ଘଟନାବଳୀ ଘେନି ଏଗୁଡ଼ିକ ରଚିତ ହୁଅନ୍ତି ନାହିଁ । ନିରଙ୍କୁଶ କଳନାବଳ ସରେ ମାତି ଲେଖକ ନାୟକ, ନାୟିକା ତଥା ସେମାନଙ୍କ ଘଟଣାବହୁଳ ଜୀବନର ତାବତୀୟ କାର୍ଯ୍ୟକଳାପ ସମସ୍ତହିଁ ସ୍ୱୀୟ ଉଦ୍ଭାବନୀ ଶକ୍ତିବଳରେ ସୃଷ୍ଟି କରନ୍ତି ।

କିନ୍ତୁ ସମୟ ସମୟରେ ସେ ଐତିହାସିକ ଘଟଣାବିଶେଷର ଆଶ୍ରୟ ଗ୍ରହଣ କରି ନିଜର କର୍ତ୍ତବ୍ୟ ସମ୍ପାଦନ କରନ୍ତି । କେହି କେହି ପୌରାଣିକ ଘଟଣାବଳୀର ଅବଲମ୍ବନରେ ଉପନ୍ୟାସାଦିର ଭିତ୍ତି ସଂସ୍ଥାପନ କରନ୍ତି । କିନ୍ତୁ ମନେ ରଖିବା ଉଚିତ, କାବ୍ୟ ଉପନ୍ୟାସାଦିରେ କଥାବସ୍ତୁର ନିର୍ବାଚନ ଅତି ଅପ୍ରଧାନ ଓ ଗୌଣ ଏବଂ ଚରିତ୍ରଚିତ୍ରଣ ଅତି ପ୍ରଧାନ ଓ ମୁଖ୍ୟ ବୋଲି କଥାବସ୍ତୁଟି ବାସ୍ତବ ହେଉ ବା କାଳ୍ପନିକ ହେଉ, ସେଥିରେ ବିଶେଷ କିଛି ଯାଏ ଆସେ ନା । ପୁଣି ସର୍ବତ୍ର ଦେଖାଯାଏ, ଇତିହାସ ବା ପୁରାଣ ବା ଅନ୍ୟ କୌଣସି ବାସ୍ତବ ଘଟଣାର ଆଶ୍ରୟ ନେଲେ ମଧ୍ୟ କବି ସେଥିରେ ତାଙ୍କ କବି-କର୍ତ୍ତବ୍ୟ ସାଧନର ଉପଯୋଗୀ ବହୁତ ପରିବର୍ତ୍ତନ କରନ୍ତି ।

ତାଙ୍କର ଭାବପ୍ରକାଶର ଅନୁକୂଳ ନାୟକ, ନାୟିକା ଓ ସେମାନଙ୍କର କାର୍ଯ୍ୟାବଳୀର ନିର୍ବାଚନରେ ପୂର୍ଣ୍ଣ ସ୍ୱାଧୀନତା କବିଙ୍କର ଥିବା ଉଚିତ ।

ପୁଣି ସେ ନିଜର ଉଦ୍ଭାବନୀ ଶକ୍ତିବଳରେ ନୂତନ ନୂତନ ନାୟକ, ନାୟିକା, ନୂତନ ପରିସ୍ଥିତି, ନୂତନ ବାତାବରଣ ଓ ନୂତନ ନୂତନ ଘଟଣା-ପରମ୍ପରା ସୃଷ୍ଟି କରି ଇତିହାସ ବା ପୁରାଣଠାରୁ ବହୁଦୂରକୁ ଗତି କରନ୍ତି । କେବଳ ତାଙ୍କର ଆଦର୍ଶରୁ ଭ୍ରଷ୍ଟ ନ ହୋଇ ଲକ୍ଷ୍ୟଚ୍ୟୁତ ନ ହେଲେହିଁ ହେଲା ।

ସେହି ଆଦର୍ଶ କଅଣ ? ମନୁଷ୍ୟର ଅନ୍ତଃପ୍ରକୃତି ତଥା ବାହ୍ୟପ୍ରକୃତିର ପର୍ଯ୍ୟବେକ୍ଷଣ, ଅନୁଶୀଳନ ଓ ତାହାର ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ-ସମ୍ବଳିତ ନିଗୂଢ଼ ରହସ୍ୟର ଦ୍ୱାରୋଦ୍‌ଘାଟନର ଚେଷ୍ଟା ଓ ସେ ରହସ୍ୟର ମାଧୁରୀ ଓ ମହିମାକୁ ଭାଷାର ରଞ୍ଜନକାରୀ ରଙ୍ଗରେ ରଞ୍ଜିତ ଓ ଉଦ୍ଭାସିତ କରି ମନୁଷ୍ୟର ହୃଦୟ-ଦର୍ପଣରେ ପ୍ରତିଫଳିତ କରିବାର କଳାନୁମୋଦିତ ପ୍ରୟାସ । କାବ୍ୟର ଆଦର୍ଶକୁ ଗୋଟିଏ ଶବ୍ଦାଡ଼ମ୍ବରପୂର୍ଣ୍ଣ ବାକ୍ୟବିଶେଷର ସଙ୍କୀର୍ଣ୍ଣ ସୀମା ମଧ୍ୟରେ ନିବଦ୍ଧ କରିଦେଲେ ତାହାର ପୂର୍ଣ୍ଣ ଅଭିବ୍ୟକ୍ତି ଅସମ୍ଭବ । ସୁତରାଂ ତାହାର ସୁବିସ୍ତୃତ ଜଟିଳତାର ବିଶଦୀକରଣ ବର୍ତ୍ତମାନ ସହଜସାଧ୍ୟ ନୁହେ । କେବଳ ଦୃଶ୍ୟକାବ୍ୟର ବୈଶିଷ୍ଟ୍ୟ ଦେଖାଇବାପାଇଁ ଯେତିକି ଲୋଡ଼ା ସେତିକିମାତ୍ର ସଂକ୍ଷେପରେ ବିବୃତ କରାଯାଉ । ଉପନ୍ୟାସ ହେଉ ବା ଦୃଶ୍ୟକାବ୍ୟ ହେଉ, ସାହିତ୍ୟର ଗୋଟିଏ ଗୋଟିଏ ବିଭାଗ ମାତ୍ର । କାବ୍ୟ ବା ସାହିତ୍ୟ ଅଭିବ୍ୟକ୍ତିଭେଦରେ ଆତ୍ମନେପଦୀ (Subjective) ଏବଂ ପରସ୍ମୈପଦୀ (Objective) ଏହି ଦୁଇ ଶ୍ରେଣୀରେ ବିଭକ୍ତ । ଯେଉଁ କବିତାରେ କବି ନିଜର ହୃଦୟର ଅନୁଭୂତିକୁ ଅଭିବ୍ୟକ୍ତ କରିବାଲାଗି ରୂପ ପ୍ରଦାନ କରେ, ତାହି ଆତ୍ମନେପଦୀ (Subjective) କବିତା; କିନ୍ତୁ ପରସ୍ମୈପଦୀ (Objective) କବିତାରେ ଯଥା ମହାକାବ୍ୟ ବା Epic, ଦୃଶ୍ୟକାବ୍ୟ ବା Drama ରେ କବି ଠିକ ବିପରୀତ ଆଚରଣ କରି ଅପର ହୃଦୟର ଚିତ୍ର ଅଙ୍କନ କରେ ଏବଂ ନିଜ ହୃଦୟର ଭାବସଙ୍ଗୋପନକୁ ତାହାର କାବ୍ୟାଦର୍ଶ ମନେ କରେ । ସୁତରାଂ ତାହାକୁ ପରସ୍ମୈପଦୀ କବିତା ବୋଲାଯାଏ ।

(୧) ବହିର୍ଜଗତର କୌଣସି ଦୃଶ୍ୟ ବା ଘଟଣା ଦେଖି କିମ୍ବା ଅନ୍ତର୍ଜଗତର କୌଣସି ଭାବୋନ୍ମେଷ ସଙ୍ଗେ ସଙ୍ଗେ କବିଙ୍କ ହୃଦୟରେ ଯେଉଁ ଆନ୍ଦୋଳନର ସୃଷ୍ଟି ହୁଏ, କବି ତାହାର ପ୍ରତିକୃତି ବିଶ୍ୱସମୀପରେ ଉପସ୍ଥାପିତ କରନ୍ତି । କବିହୃଦୟରେ ସେହି ଆନ୍ଦୋଳନର ଭାବ-ପ୍ରେମମୟ ସୁନ୍ଦର ମୂର୍ତ୍ତି ଅଙ୍କନ କରିବାହିଁ କାବ୍ୟକଳାର ଉଦ୍ଦେଶ୍ୟ । କବି ମନେ କରନ୍ତି, ମୋହର ହୃଦୟର ଏହି ନିଗୂଢ଼ ରହସ୍ୟଟି କଅଣ ଗୋପନ ରହିବ ? କେହି କଅଣ ତାହାର ଆଭାସ ମାତ୍ର ପାଇବେ ନାହିଁ । ଏ ଆନନ୍ଦମାଧୁରି ମୁଁ କଅଣ ଏକା ଭୋଗ କରିବି ? ମୁଁ ନିଶ୍ଚୟ ସମସ୍ତଙ୍କୁ ଭୂତ ଭବିଷ୍ୟ ବର୍ତ୍ତମାନ ଯେ ଯେଉଁଠି ଥାଉନ୍ତୁ ନା କାହିଁକି ମୋର ସ୍ନେହ-ନିମନ୍ତ୍ରଣ ପଠାଇଦେବି । ପୁରାଣପ୍ରସିଦ୍ଧ ରାଜକୁମାରୀଙ୍କ ସ୍ୱୟମ୍ବରକୁ ଶୁଭଘଣ୍ଟା ଲକ୍ଷେ ରାଜାଙ୍କୁ ନିମନ୍ତ୍ରଣ ଦିଆଯାଉଥିଲା । ବାସୁକି ପ୍ରଭୃତି ଗୁରୁଜଣ ନିଜ ନିଜ କର୍ମରୁ ଅବସର ନ ପାଇବାରୁ ଆସି ପାରୁ ନ ଥିଲେ, କିନ୍ତୁ କବିଙ୍କ ନିମନ୍ତ୍ରଣ ଆଜି ସେମାନଙ୍କୁ ମଧ୍ୟ ରକ୍ଷା କରିବାକୁ ହେବ । ସେମାନେ ଅଗତ୍ୟା ଆସି ନ ପାରିଲେ କବିଙ୍କ ଅମୃତମଣୋହି ସେମାନଙ୍କ ପାଖକୁ ପଠାଇ ଦିଆଯାଇ ପାରେ । ସୃଷ୍ଟିଛଡ଼ା ପାଗଳର ଏ ଦୁରାକାଂକ୍ଷା ଦେଖି କିଏ ନ ହସିବ ? କିନ୍ତୁ ଏହି ଅଭିବ୍ୟକ୍ତି ନିଶା ବା ଆତ୍ମପ୍ରକାଶର ମଦିରା ମନୁଷ୍ୟମାନେ ଊଣା ଅଧିକରେ ଘୋଟି ରହିଅଛି । ଆତ୍ମାନୁଭୂତର ଅଭିବ୍ୟକ୍ତି ଗୋଟିଏ ଦୁର୍ବାର ଲାଳସା । ଏହାର ସର୍ବଗ୍ରାସୀ ନିଶାରେ ଦୁନିଆଁ ଟଳମଳ; କିନ୍ତୁ ଅଭିବ୍ୟକ୍ତି କରିବାର କବିର ଯେ ଦକ୍ଷତା ଅଛି ଅନ୍ୟର ତାହା ନ ଥିବାରୁ ତାହାର ମନର କଥା ଭାଷା ଅଭାବରୁ ମନରେ ମରୁଛି, କିନ୍ତୁ କବି ତାହାର ପ୍ରତିଭାର ଐକ୍ୟ କରଣ ସାହାଯ୍ୟରେ ତାହା ପ୍ରକାଶ କରିବାର ଚେଷ୍ଟା କରେ । ସାଧାରଣ ମନୁଷ୍ୟସ୍ୱରୂପ ସନ୍ଧାନର ଅନୁରୂପ ଭାଷା ପାଏ ନାହିଁ ବୋଲି ସେ ନୀରବ-କବି ହୋଇ ରହିଯାଏ । ତେଣୁ ମନୁଷ୍ୟର ଏହି ସ୍ୱଭାବସିଦ୍ଧ ଅଭିବ୍ୟକ୍ତିଲାଳସାକୁ ଉପହାସ କରିବା ସମୀଚୀନ ନୁହେ ।

କବିଙ୍କର ଏହି ଆତ୍ମପ୍ରକାଶ ବା ଆତ୍ମନିବେଦନ ବା ଆତ୍ମବିଶ୍ଳେଷଣ କ୍ରିୟାକୁ ଆତ୍ମନେପଦୀ କବିତା କହନ୍ତି । କବି କୌଣସି ଦୃଶ୍ୟ ଦେଖି ବା ଶୁଣି ବା କୌଣସି ବିଷୟ ମନେ ମନେ ଭାବି ଯେଉଁ ଭାବପ୍ରେମର ଧାରାରେ ଅବଗାହନ କରନ୍ତି, ତାହାହିଁ ସେ ସୌନ୍ଦର୍ଯ୍ୟର ଛନ୍ଦରେ ତାଳ ପ୍ରକାଶ କରନ୍ତି । ମଧୁସୂଦନ ପଦ୍ମଟିଏ ଦେଖି, ରାଧାନାଥ ଚିଲିକା ପାର ହେଉଁ ହେଉଁ, କେହି ବା ଗୋଟିଏ ପକ୍ଷୀର ଡାକ ଶୁଣି, କେହି ବା କୌଣସି ଲୋକର ମୃତ୍ୟୁସମ୍ବାଦ ପାଇ ଇତ୍ୟାଦି ଇତ୍ୟାଦି ଅସଂଖ୍ୟ ରୂପରେ କବି-ହୃଦୟରେ ଯେଉଁ ଭାବବିକ୍ଷୋଭର ସୃଷ୍ଟି ହୁଏ, କବି ତାହାହିଁ ପ୍ରକାଶ କରିବାକୁ ଲେଖନୀଧାରଣ କରନ୍ତି । ଏହିପରି ଗୀତିକାବ୍ୟ ବା ଖଣ୍ଡକାବ୍ୟକୁ ଆତ୍ମନିବେଦନାତ୍ମକ କାବ୍ୟ ବା ଆତ୍ମନେପଦୀ କବିତା କହନ୍ତି । ଏଥିରେ କବି ଦୃଶ୍ୟମାନ ପଦ୍ମ ବା ଚିଲିକାର ବାସ୍ତବରୂପଠାରୁ ତାହାର କାଳ୍ପନିକ ବା ମନୋମୟୀ ମୂର୍ତ୍ତିକୁ ବେଶୀ ଆଦର କରନ୍ତି । ସୌନ୍ଦର୍ଯ୍ୟର ପୂଜାରୀ କବି ନିସର୍ଗସୁନ୍ଦର ପଦ୍ମଟିଏ କିମ୍ବା ଉତ୍କଳ-କମଳା-ବିଳାସ-ଦୀର୍ଘିକା ଚିଲିକାକୁ ଦେଖିଲାକ୍ଷଣି ମୋହିତ ହୋଇ ପଡ଼ିଲେ । ଇତର ସାଧାରଣଙ୍କଠାରୁ ତାଙ୍କର ସୌନ୍ଦର୍ଯ୍ୟ-ଗ୍ରହଣର କ୍ଷମତା ବେଶୀ ଥିବାରୁ ସେ ଯେ ବେଶୀ ମୁଗ୍ଧ ହୋଇ ପଡ଼ିଲେ ଏଥିରେ ସନ୍ଦେହ ନାହିଁ । ପୁଣି ଯାହାର କଳ୍ପନାବିଳାସ ଯେତେ ଅଧିକ ସେ ସେହି ପରିମାଣରେ ସେହି ମୁଗ୍ଧ ଅବସ୍ଥାରେ କଳ୍ପନାର ବ୍ୟୋମଯାନରେ ଆରୋହଣ କରି ସ୍ୱପ୍ନର ମାୟାପୁରୀ ସୃଷ୍ଟି କରିବାପାଇଁ ଦେଶ, କାଳ ଓ ପାତ୍ରର ସୀମା ଲଙ୍ଘନ କରି ଉପାଦାନ ସଂଗ୍ରହରେ ଲାଗିଯିବେ । ଚିଲିକାର ଦିଗନ୍ତବ୍ୟାପୀ ପରିସର ଓ ତାହାର ଅନନ୍ତ ବୈଚିତ୍ର୍ୟମୟୀ ଶୋଭାସମ୍ଭାରର ଆବିଷ୍କାର କରିବାକୁ ରାଧାନାଥଙ୍କୁ ଦୂରବୀକ୍ଷଣର ସାହାଯ୍ୟ ନେବାକୁ ପଡ଼ିଲା ନାହିଁ । ସେ କଳ୍ପନାଚକ୍ଷୁରେ ଯାହା ଯାହା ଦେଖିଲେ ତ୍ରିକାଳଦର୍ଶୀ ଯୋଗୀ ଋଷିମାନଙ୍କ ମଧ୍ୟରୁ କେହି ତାହାର ଶତାଂଶ ମଧ୍ୟରୁ ଏକାଂଶ ପର୍ଯ୍ୟନ୍ତ ଦେଖିଥିବେ କି ନାହିଁ ସନ୍ଦେହ । କାହିଁ କାଞ୍ଚୀ-ବିଜୟ, କାହିଁ

ରକ୍ତବାହୁର ଅଭିଯାନ, ତାହିଁ କବିସୂର୍ଯ୍ୟ, କାହିଁ ବା ଗୌରୀଗୁରୁ ହିମାଳୟ, କାହିଁ ବା ପୁଣି ସ୍ୱଚ୍ଛ ମୁକ୍ତାଫଳରେ ଗଢ଼ା ବାନ୍ଧିଥିବା ହ୍ରଦବାସିନୀ ଅମରା । କବିକଳ୍ପନାକୁ ସର୍ବବ୍ୟାପିନୀ ଆଖ୍ୟା ଦେବାହିଁ ସମୀଚୀନ ହେବ । ବାସ୍ତବରେ କବିକଳ୍ପନାହିଁ ମନୋରଥ ଗତି ଅଟେ ।

ସେହିପରି ଭକ୍ତକବି ମଧୁସୂଦନଙ୍କ "ପଦ୍ମ" ତାଙ୍କର ନିଜସ୍ୱ । ସେଥିରେ ବାସ୍ତବ ଜଗତର ପଦ୍ମର ସତ୍ତା ଖୁବ କମ ଅଛି । ସେ ପଦ୍ମର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟରେ ମୁଗ୍ଧ ହୋଇ ଜୀବାତ୍ମା ଓ ପରମାତ୍ମାର ସମ୍ପର୍କ ଭାବି ଭାବି ଭାବପ୍ରେମରେ ଆତ୍ମହରା ହୋଇ ପଡ଼ିଛନ୍ତି । ସୂର୍ଯ୍ୟଙ୍କ ସଙ୍ଗରେ ନଳିନୀର ଯେ ମଧୁର ସମ୍ପର୍କ, ପରମାତ୍ମା ସଙ୍ଗରେ ଜୀବାତ୍ମା ସମ୍ପର୍କ ତାଠାରୁ ବେଶୀ ମଧୁରତର । ପଦ୍ମ ପଙ୍କରୁ ଜାତ ହୋଇ ପଙ୍କଜ ବୋଲାଉଛି, ସେହିପରି ତାଙ୍କର ଆତ୍ମା ମଧ୍ୟ ପୂତିଗନ୍ଧମୟ ଭୌତିକ ବାତାବରଣ ମଧ୍ୟରେ ଲାଳିତପାଳିତ ହୋଇଅଛି । ନିତି ନିତି ପଙ୍କଜ ସଙ୍ଗରେ ସୂର୍ଯ୍ୟଦେବ ନାନା ରଙ୍ଗରସ କରୁଅଛନ୍ତି, କିନ୍ତୁ ତାଙ୍କ ହୃଦୟ ନଳିନୀସଙ୍ଗରେ ପରମାତ୍ମା ଶ୍ରୀହରିଙ୍କର ସେହିପରି ମଧୁର ସମ୍ଭାଷଣ ସମ୍ଭବପର କେବେ ହେବ; କବି ଭାବି ଭାବି ଆଶା ଓ ନୈରାଶ୍ୟର ତୁମୁଳ ଆନ୍ଦୋଳନରେ ବ୍ୟତିବ୍ୟସ୍ତ ହୋଇ ପଡ଼ୁଛନ୍ତି । ସେ ନଳିନୀ-ସୂର୍ଯ୍ୟଙ୍କ ଦୈନନ୍ଦିନ ମିଳନକୁ ଦେଖି ଅଶାନ୍ତ ହେଉଛନ୍ତି ପୁଣି ବିଳମ୍ବ ଅସହ୍ୟ ହେବାରୁ କାତର ମଧ୍ୟ ହେଉଛନ୍ତି । କବି ଆମ୍ଭମାନଙ୍କୁ ସେହି ଶଙ୍କୋଭର ସମ୍ବାଦ ଦେବାକୁ ଲେଖନୀ ଚାଳନା କରିଛନ୍ତି । ଅନ୍ୟ କେହି ପଦ୍ମ ଦେଖି ସେପରି ଭକ୍ତମନ୍ଦାକିନୀର ପ୍ରବଳ ଭାବଧାରାରେ ଅବଗାହନ କରି ନ ଥିବାରୁ ତାଙ୍କ କବିତାର ମୌଳିକତା ପ୍ରଣିଧାନ-ଯୋଗ୍ୟ, କିନ୍ତୁ କେବଳ ଭକ୍ତପରାୟଣ ହୋଇ କବିଦୃଷ୍ଟି-ବିହୀନ ହେଲେ—

ତୁଳସୀକାନନଂ ଯତ୍ର, ଯତ୍ର ପଦ୍ମବନାନି ଚ
ପୁରାଣପଠନଂ ଯତ୍ର, ତତ୍ର ସନ୍ନିହିତୋ ହରିଃ ।

ଭକ୍ତ ଏହା ବାରମ୍ବାର କହି କହି ପଦ୍ମଯୁଗ୍ମସ୍ମରଣୀ ପ୍ରତି ସଭକ୍ତି ପ୍ରଣାମ ନିବେଦନ କରି ବାହୁଡ଼ିବାହିଁ ସାର କରିବ । ଏହାହିଁ ଭକ୍ତ ଓ ଅକବ ମଧ୍ୟରେ ପାର୍ଥକ୍ୟ ।

କବିକରଣୀର ଏହି ସାମାନ୍ୟ ଅଭିଯବୁ ସେମାନଙ୍କ ଅସ୍ମାନୁସନ୍ଧାନ ଓ ଆତ୍ମନିବେଦନର ରହସ୍ୟ କିଛି ବୁଝାଯାଏ, କିନ୍ତୁ ଅକବି-କଳନା-ବଳାସର ସ୍ୱଳ୍ପତା ନବଜନନବୁ ହେଉ କମ୍ବା ଘୋର ଇନ୍ଦ୍ରିୟନିବେଶରୁ ହେଉ ସେ ରୁକ୍ଷ, କର୍କଶ ଓ ବାସ୍ତବ ମଧ୍ୟରେହିଁ ଆବଦ୍ଧ ରହେ; ସେ ଇନ୍ଦ୍ରଜାଲର ସୃଜନ କରିବ କିପରି ? ଜନ କହିଲେ,

ପରଷ୍ପର ଭୂଜ ଛନ୍ଦିବାରେ ସଦା
ଚମ୍ପା ଚୂତ ଯହିଁ ବଳାନ୍ତି ରେଖା ।

କିନ୍ତୁ ଅକବ ମନେ କରେ, କୌଣସି ପର୍ବତ ବା ସ୍ଥାନବର୍ଣ୍ଣନା କରିବାକୁ ଗଲେ ତତ୍ରତ୍ୟ ସକଳ ବୃକ୍ଷ, ଲତା, ଗୁଳ୍ମ ପ୍ରଭୃତିର ଗୋଟାଏ ସୁଦୀର୍ଘ ତାଲିକା କରି ଥୋଇଦେଲେ ବର୍ଣ୍ଣନାତ୍ମକ କବିତା ହେଲା । ପଣ୍ଡିତ-ସଭାରେ ପଣ୍ଡିତଙ୍କ "ଅଗଚ୍ଛ" ଶୁଣି ପଣ୍ଡିତବେଶୀ ଗଜମୂର୍ଖ ଯେପରି ପ୍ରତ୍ୟୁତ୍ତରରେ ଏଗଚ୍ଛ ଓ 'ଅଉଗଚ୍ଛ' ପ୍ରଭୃତି କହି ନିଜ ବାଗ୍ମିତାର ପରିଚୟ ଦିଏ, ସେହିପରି କବିଦରିଦ୍ରମନ୍ୟ ଆଧୁନିକ ଯୁଗର ଅକବିମାନେ ସେମାନଙ୍କର ବର୍ଣ୍ଣନାତ୍ମକ କାବ୍ୟରେ ଶରଢ଼ିବାଠୁଁ ଆଠାରୁ ଆରମ୍ଭ କରି ନାନା ଗୁଳ୍ମଲତାର ନାମୋଲ୍ଲେଖ କରି ପାଠକର କଳନାକୁ ଅଯଥା ଭାରାକ୍ରାନ୍ତ କରି ଦିଅନ୍ତି । କୌଣସି ନଦୀବର୍ଣ୍ଣନା କରିବାକୁ ଯାଇ ନଦୀର ଦୁଇକୂଳସ୍ଥ ଗ୍ରାମ, ନଗର, ପଲ୍ଲୀର ଦୃଶ୍ୟ, ଅଦୃଶ୍ୟ, ଘାଟ, ବାଟ, ହାଟ ପ୍ରଭୃତିର ସୁଦୀର୍ଘ ତାଲିକା ପ୍ରଦାନପୂର୍ବକ ବାଗ୍‌ଦେବୀଙ୍କ ସେବା କରି ବସନ୍ତି । ଏପରି କବିତା ଉତ୍କଳର ବାଣୀକୁଞ୍ଜରେ ବିରଳ ନୁହେ ।

(୨) ଆତ୍ମନିବେଦନ ଯେପରି ଆତ୍ମନେପଦୀ କବିତାର ପ୍ରାଣ, ଆତ୍ମସଗୋପନ ବା ଆତ୍ମବିସ୍ମରଣ ମଧ୍ୟ ସେହିପରି ଦୃଶ୍ୟକାବ୍ୟ ପ୍ରଭୃତି ପରସ୍ମୈପଦୀ-କବିତାଶୈଳୀର ଆଦର୍ଶ । ପରସ୍ମୈପଦୀ କବି ନାଟ୍ୟକ-

ନାୟିକାଙ୍କ ଚରିତ୍ରଚିତ୍ରଣରେ ନିଜର ମନୋଭାବ ବା ମତାମତ ଗୋପନ କରିବାର ଚେଷ୍ଟା କରନ୍ତି । ଏହା ଭାରି ଦୁଃସାଧ୍ୟ, ଏକରକମ ଅସାଧ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଦୃଶ୍ୟକାବ୍ୟରେ କବି ତାଙ୍କର ଉଦ୍ଦେଶ୍ୟସାଧନର ଅନୁକୂଳ ଗୋଟିଏ ବିଷୟବସ୍ତୁ ନିର୍ବାଚନ କରନ୍ତି, ତାହାର ଉପଯୋଗୀ ବାତାବରଣ ଓ ନାୟକ-ନାୟିକା ସୃଷ୍ଟି କରନ୍ତି । ଉକ୍ତ ନାୟକ-ନାୟିକାମାନେ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ପରସ୍ପର ମଧ୍ୟରେ ସମ୍ବନ୍ଧ ସ୍ଥାପନ କରନ୍ତି ଏବଂ ବାସ୍ତବଜଗତରେ ଜୀବନ୍ତ ନରନାରୀଙ୍କ ପରି ପରସ୍ପର ପରସ୍ପରଙ୍କ ସଂଘର୍ଷରେ ଆସନ୍ତି । କାମ, କ୍ରୋଧ, ଲୋଭ, ମୋହ, ପ୍ରଭୃତି ଷଡ଼ରିପୁ ଯେପରି ଆମ୍ଭମାନଙ୍କ ଉପରେ ବାସ୍ତବଜଗତରେ ଦୁର୍ଦ୍ଦାନ୍ତ ପ୍ରଭାବ ବିସ୍ତାର କରି ଦୟା, ଦାକ୍ଷିଣ୍ୟାଦି ସୁକୁମାର ବୃତ୍ତିଗୁଡ଼ିକୁ ଉତ୍ପୀଡ଼ନ କରନ୍ତି ଏବଂ କାମ ଓ ପ୍ରେମ, ଲୋଭ ଓ ବଦାନ୍ୟତା, ସ୍ୱାର୍ଥ ଓ ପରମାର୍ଥ ଭିତରେ ଯେପରି ବାସ୍ତବଜଗତରେ ସର୍ବଦା ଟଣା ଓଟରା ଚାଲିଥାଏ, ସେହିପରି କବିକଳ୍ପନାପ୍ରସୂତ ଜଗତରେ ମଧ୍ୟ ଏପରି ଦେବାସୁର ମଧ୍ୟରେ ସଂଗ୍ରାମର ଅଭାବ ନ ଥାଏ । ଦୃଶ୍ୟକାବ୍ୟର କବି ଏହି ଦେବାସୁର ସଂଗ୍ରାମର ଦୃଶ୍ୟଟି ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ କରି ନିଜର କୌଣସି ଅଭିମତ ବ୍ୟକ୍ତ କରନ୍ତି ନାହିଁ କିମ୍ବା କରିବା ଉଚିତ ମଧ୍ୟ ନୁହେଁ । ଶକୁନ୍ତଳା ନାଟକରେ କବି କାଳିଦାସଙ୍କର ନିଜ ମତ କହୁନାହାନ୍ତି । ଦୁଷ୍ମନ୍ତ, ଶକୁନ୍ତଳା, କଣ୍ୱ ପ୍ରଭୃତି କାହାରି କଥୋପକଥନରୁ କାଳିଦାସଙ୍କର ମାନସିକ ଅବସ୍ଥାର ସୂଚନା ମିଳେ ନାହିଁ । ସେ କି ପ୍ରକାର ଲୋକ ଥିଲେ ଓ ତାଙ୍କର ହୃଦୟର ସ୍ୱାସ୍ଥ୍ୟ କିରୂପ ଥିଲା, କେହି ଠିକ କରି ଜାଣିବେ କିପରି ? ସେକ୍‌ସପିଅରଙ୍କ 'ମାର୍ଚ୍ଚେଣ୍ଟ ଅବ୍ ଭେନିସ୍' ପଢ଼ି ସାଇଲକ୍, ପୋର୍ସିଆ ଏବଂ ଏଣ୍ଟୋନିଓ ପ୍ରଭୃତିଙ୍କ ଭାଷଣରୁ ସେକ୍‌ସପିଅରଙ୍କ ଚରିତ୍ରର ସମ୍ବାଦ ପାଇବା ଅସମ୍ଭବ । କାରଣ ସେ ପରସ୍ମୈପଦୀ କବିତାର କବି । ସେଥିରେ ସେ ନିଜ ହୃଦୟର ଗୋପନ ସମ୍ବାଦ ଅଭିବ୍ୟକ୍ତ

କରିବାର ଚେଷ୍ଟା କରି ନାହାନ୍ତି । ସେ କେବଳ ସାଇଲକ, ପୋର୍ଶିଆ ପ୍ରଭୃତିଙ୍କ ହୃଦୟର ଗମ୍ଭୀରତମ ପ୍ରଦେଶନିହିତ ନିଗୂଢ଼ ରହସ୍ୟମାନ ଭାଷାରେ ପ୍ରକାଶ କରିଛନ୍ତି ମାତ୍ର । ସାଇଲକ୍ ଏଣ୍ଟୋନିଙ୍କୁ ନିଜ ମୁଠା ଭିତରେ ପାଇଥିଲାବୁ, ତାହାର ମସ୍ତିଷ୍କ ହୃଦୟରେ ଯେଉଁ ଯେଉଁ ଷଡ଼ଯନ୍ତ୍ର ଉଦ୍ଭାସିତ ହୋଇ ଉଠିଥିଲା, ତାହା କେବଳ ଅନ୍ତର୍ଯାମୀଙ୍କୁହିଁ ଜଣା । ସେକ୍ସପିଅର ମଧ୍ୟ ସାଇଲକ୍‌ର ଅନ୍ତର୍ଯାମୀରୂପେ ସେ ସବୁ ଜାଣି ପାରି ସୁଦକ୍ଷ ଲେଖନୀଚାଳନଦ୍ୱାରା ସେଗୁଡ଼ିକୁ ଭାଷା ସାହାଯ୍ୟରେ ରୂପ ପ୍ରଦାନ କରି ଜଗତ ସମୀପରେ ଉପସ୍ଥାପିତ କରିଅଛନ୍ତି । ସେକ୍ସପିଅର ପରିସ୍ଥିତି କବିତା ରଚନାରେ ସୁଦକ୍ଷ ଶିଳ୍ପୀ ଥିଲେ ବୋଲି ସେ ତାଙ୍କର ପ୍ରତ୍ୟେକ ଦୃଶ୍ୟକାବ୍ୟରୂପୀ ପରିସ୍ଥିତି ରଚନାରେ ପ୍ରତ୍ୟେକ ନାରୀ-ପୁରୁଷଙ୍କର ହୃଦୟର ଛବି ଯଥାଯଥ ଅଙ୍କନ କରି ପାରିଥିଲେ । ସେମାନଙ୍କ ହୃଦୟର ଗମ୍ଭୀରତମ ପ୍ରଦେଶସ୍ଥ ନିଗୂଢ଼ରହସ୍ୟରାଜି ସେ ଯେପରି ଜାଣି ପାରୁଥିଲେ, ସେପରି ତାହାଙ୍କ ପକ୍ଷରେ ସମ୍ଭବ ନ ଥିଲା । ଏପରି କି ହେମଲେଟ୍‌ଙ୍କ ହୃଦୟର ଅବସ୍ଥା ନାନା ପରିବର୍ତ୍ତନ ମଧ୍ୟରେ ଗଢ଼ି ଉଠୁଥିବାବେଳେ ହେମଲେଟ ନିଜେ ନିଜ ହୃଦୟର ଗତି ନିର୍ଦ୍ଧାରଣରେ ଅସମର୍ଥ ହୋଇ ପର ମୁହୂର୍ତ୍ତରେ କଅଣ ହେବ, ତାହା ସେ ନିଜେ ସ୍ଥିର କରି ପାରୁ ନ ଥିଲେ । କିନ୍ତୁ ସେକ୍ସପିଅରଙ୍କୁ ଏସବୁ ସହଜରେ ଜଣା ପଡ଼ୁଥିଲା । ସେ ତାଙ୍କ ନାଟକାବଳୀରେ ନାନାପ୍ରକୃତିର ନରନାରୀଙ୍କ ଚରିତ୍ରଚିତ୍ରଣରେ ଏହିପରି ଅନନ୍ୟସାଧାରଣ ମେଧା ଓ ପ୍ରତିଭାର ପରିଚୟ ଦେଇଅଛନ୍ତି । ସେ ପ୍ରତ୍ୟେକ ନରନାରୀର ହୃଦୟ ବିଶ୍ଳେଷଣରେ ପରିସ୍ଥିତି କବିତା-ସୁଲଭ ଆତ୍ମବିସ୍ମରଣ ଏବଂ ଆତ୍ମଗୋପନର ପରାକାଷ୍ଠା ପ୍ରଦର୍ଶନ କରିଥିବାରୁ ସେ ନାଟ୍ୟକାରମାନଙ୍କ ମଧ୍ୟରେ ଏହି ଅମୋଘଗର୍ବବଳରେ ସର୍ବୋଚ୍ଚ ପଦବୀ ଦାବୀ କରନ୍ତି ।

ମନୁଷ୍ୟର ହୃଦୟସିନ୍ଧୁ ଅଗାଧ ଓ ଅତଳସ୍ପର୍ଶୀ ଓ ଅନନ୍ତ ଭାବ-ତରଙ୍ଗର ଘାତପ୍ରତିଘାତରେ ନିତ୍ୟୋଲ୍ଲାସିତ । ପାରିପାର୍ଶ୍ୱିକ

ଅବସ୍ଥାର କ୍ରିୟା ସବୁବେଳେ ଲୁଚି ରହିଛି । ସେହି ଅନନ୍ତ ପରିବର୍ତ୍ତନଶୀଳ ହାଡ଼୍ୟ-ନବନବବିଭ୍ରମଶାଳୀ ହୃଦୟଗୁଡ଼ିକର କଳନାତୀତ କୁଟିଳତାକୁ ହୃଦୟଙ୍ଗମ କରିବା କଠିନ । ମୋର ନିଜ ହୃଦୟର କୁଟିଳଗତି ଯେତେବେଳେ ମୋତେ ଜଣା ନାହିଁ, ତେବେ ଅପରର ହୃଦୟର ଖବର ମୋତେ ଦେବ କିଏ ? ଅଭିନ୍ନହୃଦୟ ବନ୍ଧୁବରଙ୍କ ଶାରୀରିକ ଜ୍ୱାଳାଯନ୍ତ୍ରଣାକୁ ସହାନୁଭୂତିର ଚକ୍ଷୁରେ ଦେଖି ତାହାର ଗଭୀରତା ଅନୁଭବ କରିବା ମୋ ପକ୍ଷରେ ଅସାଧ୍ୟ । କଥାରେ ଅଛି, "ନହି ବନ୍ଧ୍ୟା ବିଜାନାତି ଗୁର୍ବୀଂ ପ୍ରସବବେଦନାଂ" । ଏ ତ ହେଲା କାୟିକ କ୍ଲେଶର କଥା; ତେଣୁ ଅପରର ମାନସିକ ଓ ଆଧ୍ୟାତ୍ମିକ ଯନ୍ତ୍ରଣା ସମ୍ୟକ୍ ଅନୁଭବ କରିବା ଏହାଠାରୁ ଅଧିକ କଠିନ । ମନୁଷ୍ୟ ତ ଅନ୍ତର୍ଯ୍ୟାମୀ ନୁହେ । ତାହାର ଦୃଷ୍ଟି ସୀମାବଦ୍ଧ; ଦେଶ କାଳ ପାତ୍ର ଦ୍ୱାରା ନିୟନ୍ତ୍ରିତ ଓ ଖଣ୍ଡିତ । ଦିବ୍ୟଦୃଷ୍ଟି ବା ସୂକ୍ଷ୍ମଦୃଷ୍ଟିର ଏକାନ୍ତ ଅଭାବ । ସେ କିପରି ଅପର ହୃଦୟର ଚିତାପଜ୍ୱାଳାକୁ ସମ୍ୟକ ହୃଦୟଙ୍ଗମ କରି ତାକୁ ଭାଷାର କାରୁଁସାପରଶରେ ହୃଦୟସ୍ପର୍ଶୀ ରୂପ ଦାନ କରି ବିଶ୍ୱଜନମନୋରଞ୍ଜନର ଅଶାରେ କାବ୍ୟାମୃତ ରୂପରେ ପରିବେଷଣ କରିବ ? କବି ଏହା ପାରେ, ତାହାର ଈଶ୍ୱରଦତ୍ତ ପ୍ରତିଭା ବା ପ୍ରେମାଞ୍ଜନଚ୍ଛୁରିତ ଦିବ୍ୟଚକ୍ଷୁର ସାହାଯ୍ୟରେ । ସେକ୍ସପିଅର ତେଣୁ ପରିଚ୍ଛେଦୋପଯୋଗୀରଚନାଯୁଲଭ ଚରିତ୍ର ଚିତ୍ରଣ ବେଳେ ସେହି ତନ୍ମୟତା ଲାଭ କରି ଆତ୍ମବିସ୍ମୃତ ହୋଇଥିଲେ । ସେହି ତନ୍ମୟତା ଏତେ ଗାଢ଼ ଏବଂ ସେହି ଅଭିନିବେଶ ଏତେ ନିବିଡ଼ ଥିଲା ଯେ ତାଙ୍କର ନିଜ ସତ୍ତାର କ୍ଷୀଣ ଆଭାସ ପର୍ଯ୍ୟନ୍ତ ତାଙ୍କ ନାୟକନାୟିକାଙ୍କ ଚରିତ୍ର ଉପରେ ପଡ଼ି ନ ଥିଲା । ସାଇଲକ୍‌ଙ୍କ ହୃଦୟର ରହସ୍ୟ ଉଦ୍‌ଘାଟନ କଲାବେଳେ ସେ ଅବିକଳ ସାଇଲକ୍ ପାଲଟି ଯାଉଥିଲେ ଏବଂ ପୋର୍ସିଅଙ୍କ ଭାଷଣର କୃପାବାଦବ୍ୟାଖ୍ୟା ବେଳେ ସେ ଅବିକଳ ପୋର୍ସିଅ ହୋଇ ଯାଉଥିଲେ । ସେଥିପାଇଁ ତାହାଙ୍କୁ Myriad-minded ଅର୍ଥାତ୍ ସହସ୍ରଶୀର୍ଷା ପୁରୁଷଆଖ୍ୟା

କଥ ଯାଇପଛ । ଏ କଥା ଶୁଣି ବଶ୍ୱାସ କରିବାକୁ ଇଚ୍ଛା ହୁଏ—

"ସକଳ ଘଟେ ନାରାୟଣ, ଅଛନ୍ତି ଅନାଦି କାରଣ"

ଏହା ହେଲ୍ ପରସ୍ପେରଦୀ-ବବଚାପୂଲର କବଙ୍କର ଅଘଟନ-ଘଟନ-ପଟୀୟସୀ ଅତ୍ମବସ୍ମରଣଶୀଳ-ଲୀଳାଶକ୍ତିର କଥା । ସାଧାରଣ ମନୁଷ୍ୟର ହୃଦୟର ଭବଧାର ଉପରେ ଥରେ ଏହ ବଶ୍ଳେଷଣାତ୍ମକ ରଶ୍ମି ସପାତ କର ଦେଖାଯାଉ । ମାନବର ମନୋରାଜ୍ୟ ଖୁବ ବଶାଳ ଓ ରହସ୍ୟମୟ ଏବଂ ତାହାର ହୃଦୟରାଜ୍ୟ ବଶାଳତର ଏବଂ ନିଗୂଢ଼ତର ରହସ୍ୟରେ ପରପୂର୍ଣ୍ଣ । ସାଧାରଣ ମନୁଷ୍ୟ ପକ୍ଷରେ ଏତାଦୃଶ ଅତ୍ମ-ସଗୋପନ ବା ଅତ୍ମ-ବସ୍ମରଣ ବ୍ୟାପାର ଅତ ଦୁଃସାଧ୍ୟ । ଅତ ସାମାନ୍ୟ ସାମାନ୍ୟ ବଷୟରେ ମଧ୍ୟ ତାହାର ସ୍ୱାର୍ଥାନ୍ୱେଷବେଶଜନତ ପକ୍ଷପାତତା ଦୋଷ ଧରା ପଡ଼େ । ସେ କ କେବେ ନଜର ସତ୍ତାର ଛାୟାକୁ ଅତକ୍ରମ କର ଏକପଦ ଅଗ୍ରସର ହୋଇ ପାରେ ? "କାୟା ସଙ୍ଗେ ସଙ୍ଗେ ଛାୟା ।" ସୁତରାଂ ପ୍ରତ ପଦକ୍ଷେପରେ ତାହାର ଅହମ୍ମକାର ଛାୟା ତାହାର ଅନୁ-ବର୍ତ୍ତନ କରିବାହିଁ ସୁନଶ୍ଚ ତ । ଶୁଣାଯାଏ, ଦେବତାମାନଙ୍କର ଛାୟା ପଡ଼େ ନା । ମନୁଷ୍ୟ ତ ଦେବତା ନୁହେ, ତାହାର ପଞ୍ଚଭୂତବଶିଷ୍ଟ ଗୋଟିଏ ଦେହ ଅଛି ଓ ତଦାନୁଷଙ୍ଗିକ ତାହାର ମାୟା ମମତା ମଧ୍ୟ ଅଛି । ସେ ମମତା, ଅସ୍ମିତା ଓ ଅହମିକାର ବନ୍ଧନ ଛିନ୍ନ କରିବା ସହଜ ନୁହେ ।

ଅତୀନ୍ଦ୍ରିୟମନୋରାଜ୍ୟ ଓ ବାଙ୍ମନୋଽଗୋଚର ଚନ୍ମୟରାଜ୍ୟର କଥା ଛାଡ଼ି ଆମର ପଞ୍ଚେନ୍ଦ୍ରିୟଗ୍ରାହ୍ୟ ପ୍ରତ୍ୟକ୍ଷମାଣ ଜଗତର ଦୃଶ୍ୟାବଳୀ ବର୍ଣ୍ଣନା କରିବାକୁ ଯାଇ ଅମ୍ଭେମାନେ ନରପେକ୍ଷ ଦୃଷ୍ଟିପାତ କର ସତ୍ତାର ସ୍ୱରୂପ ଉପଲବ୍ଧି କରିବାକୁ ସମ୍ପୂର୍ଣ୍ଣ ଅକ୍ଷମ । କାମଲ-ରୋଗଗ୍ରସ୍ତ ରୋଗୀ ପର ନଜର ସ୍ନେହ-ମମତା-ରଞ୍ଜିତ ନୟନରେ ଦୃଶ୍ୟମାନ ଜଗତକୁ ଦେଖି-ବାକୁ ସଦା ସର୍ବଦା ଅଭ୍ୟସ୍ତ । ଗୋଟିଏ ସାମାନ୍ୟ ଉଦାହରଣ ସାହାଯ୍ୟରେ ଏକଥାଟି ବୁଝାଇବାର ଚେଷ୍ଟା କରାଯାଉ । କୌଣସି ପ୍ରତଯୋଗିତାମୂଳକ ଖେଳ ଦେଖିବାକୁ ଯାଇ ଦୁଇ ଦଳର ଦେଖଣାହାରମାନେ କପର ନଜ ଦଳ ପ୍ରତ ପକ୍ଷପାତଦୃଷ୍ଟିପୂର୍ଣ୍ଣ ବର୍ଣ୍ଣନା ଦେବେ, ତାହା ଦେଖିଲେ ଉକ୍ତ

ଉତ୍ତର ଯାଥାର୍ଥ୍ୟ ସହଜରେ ଅନୁମାନ କରାଯାଇ ପାରେ । ଏପରି ସାମାନ୍ୟ ଘଟଣାଟିରେ ଯଦି ନିରପେକ୍ଷ ଦୃଷ୍ଟିକୋଣର ଅଭାବ ହୁଏ, ତେବେ ପରସ୍ପରପଦ୍ମାଚାରଚନାସୁଲଭ ଆତ୍ମୋତ୍ସର୍ଗ ଯେ ଦୁରୂହ ବ୍ୟାପାର, ଏହା ବୋଲିବା ବାହୁଲ୍ୟ ମାତ୍ର । ତେଣୁ ଏହାର ଗୁରୁତ୍ୱ ଉପଲବ୍ଧି କରି ପାଶ୍ଚାତ୍ୟଖଣ୍ଡରେ ସାହିତ୍ୟରଥୀମାନେ କେବଳ ସେକ୍ସପିଅରଙ୍କୁ ପରସ୍ପରପଦ୍ମା ରଚନାରେ ପୂର୍ଣ୍ଣସାଫଲ୍ୟମଣ୍ଡିତ ମଣିଥିଲେ; ତେଣୁ ବଙ୍ଗର ସ୍ୱର୍ଗୀୟ କବି ହେମଚନ୍ଦ୍ର, ସେକ୍ସପିଅରଙ୍କ ଦୃଶ୍ୟକାବ୍ୟକୁ 'ନଳିନୀ ବସନ୍ତ' ନାମ ଦେଇ ଅନୁବାଦ କରିବାକୁ ଯାଇ ତାଙ୍କୁ ଦେବ ଅବତାର ବୋଲି ଅଭିନନ୍ଦନ କରିଅଛନ୍ତି—

"କବିକୁଳାମଣି ତୁମି ଦେବ ଅବତାର
କ୍ଷମ ଅପରାଧ, ପଦ ପରଶି ତୋମାର ।"

———

# କାବ୍ୟରେ କଳା ଓ ନୀତିର ସ୍ଥାନ

ଆଧୁନିକ ଯୁଗର ମହାସମନ୍ୱୟବାଦୀ ସାଧକପ୍ରବର ଶ୍ରୀରାମକୃଷ୍ଣ ପରମହଂସ ଦେବଙ୍କ ପାଖକୁ ବଙ୍ଗର ସୁବିଖ୍ୟାତ ନାଟ୍ୟାଚାର୍ଯ୍ୟ ଗିରିଶଚନ୍ଦ୍ର ଘୋଷ ଯିବା ଆସିବା କରୁଥିଲେ। ସେ ଜଣେ କ୍ଷଣଜନ୍ମା ପ୍ରତିଭାଶାଳୀ ନାଟ୍ୟକାର ଥିଲେହେଁ ତାଙ୍କର ଉଦାରଚରିତ୍ରରେ ନାନା "ପତନ, ସ୍ଖଳନ, ତ୍ରୁଟି" ମଧ୍ୟ ଥିଲା। ଅନ୍ତର୍ଯ୍ୟାମୀ ଯେ ତାହା ଜାଣି ନ ଥିଲେ ତାହା ନୁହେ। ସେ ତ ମହାଅଦୋଷଦର୍ଶୀ ଦୟାମୟ ଥିଲେ, କିନ୍ତୁ ତାଙ୍କର ଅନୁଚରମାନଙ୍କ ମଧ୍ୟରେ କେହି କେହି ଖଳ, କାନକୁହା ଈର୍ଷାପରବଶ ହୋଇ ତାଙ୍କ ପାଖରେ ଗିରୀଶଚନ୍ଦ୍ରଙ୍କ ଚରିତ୍ରର କୁତ୍ସାରଟନ କରୁଥିଲେ। ଶୁଣି ଶୁଣି ପ୍ରଭୁ ଉତ୍ୟକ୍ତ ହୋଇ କହିଲେ," ପିମ୍ପୁଡ଼ିକୁ ଶର୍କରାଭୋଜନର ଅପକାରିତା ବିଷୟରେ ଗୋଟିଏ ସାରଗର୍ଭକ ବକ୍ତୃତା ଦେଲେ କଅଣ ସେ ଶର୍କରାକଳସୀ ଛାଡ଼ି ଭୂଇଁନିମ୍ବ ଖାଇ ଯକୃତ୍‌ରୋଗ ନିବାରଣର ଚେଷ୍ଟା କରିବ? ତେବେ ତାକୁ ଶର୍କରାସ୍ୱାଦରୁ ନିବୃତ୍ତ କରିବାର ଏକମାତ୍ର ଉପାୟ ହେଉଛି—ଗୁଡ଼କଳସୀର ଅନତିଦୂରରେ ଗୋଟିଏ ମଧୁକଳସୀ ଥୋଇଦେବା। ତାହାହେଲେ ସେମାନେ ଗୁଡ଼କଳସୀକୁ ଛାଡ଼ି ମଧୁକଳସୀ ଆଡ଼କୁ ସ୍ୱତଃପ୍ରବୃତ୍ତ ହୋଇ ଧାବମାନ ହେବେ। ସେହିପରି ଗିରିଶଚନ୍ଦ୍ରଙ୍କ ପରି ଜଣେ ସମଜ୍‌ଦାର ଲୋକଙ୍କୁ ଜଣେ ଅର୍ବାଚୀନ ମନେ କରି ଗୁଡ଼ାଏ ନୀରସ ହିତୋପଦେଶ ଦେଲେ ତାର ଫଳ ଏତିକି ହେବ ଯେ ସେ ତ ମଦିରାରସସୀ ବା କାମିନୀକାଞ୍ଚନର ପ୍ରଲୋଭନ ଏଡ଼ି ପାରିବେ ନାହିଁ, ଶେଷକୁ ମୋର ସଙ୍ଗସୁଖ ଛାଡ଼ି ଅଲଗା ହେବେ। କିନ୍ତୁ ତାଙ୍କୁ ମୁଁ ଥରେ ଯଦି ମୋର ମହା-ପ୍ରେମାନନ୍ଦମୋଦକର ସ୍ୱାଦ ଚଖାଇ ପାରେ, ତେବେ ସେ ଆଉ ସେ ମଦବୋତଲରେ ମଦର ପାଖ ପଶିବେ ନାହିଁ। କାମିନୀକାଞ୍ଚନର କଥା ମଧ୍ୟ ତଦ୍ରୂପ। ପ୍ରେମ-ପରଶମଣିର ସ୍ପର୍ଶ ପାଇ ନାହାନ୍ତି ବୋଲି ତ ତାଙ୍କର ଉଦାରହୃଦୟ

ଅସାରସୁଖାଭିସରେ ମାତ୍ର ରହିଛି । ଭୁଚ୍ଛ ନିରର୍ଥକ ହିତୋପଦେଶ ଜୀବନରେ ତାଙ୍କୁ ଉତ୍ଥିତ୍ୱ କରି ଘଞ୍ଜାଇଦେବା ଉଚିତ ନୁହେ ।

ପରମହଂସ ଦେବଙ୍କ ଉକ୍ତ ଉପଦେଶର ଭାବଧାରାର ଅନୁସରଣ କରି ଆମ୍ଭମାନଙ୍କର ସାହିତ୍ୟରଥୀମାନଙ୍କର ଗୋଟିଏ ଭ୍ରାନ୍ତ ଧାରଣାର କଥା ଉଲ୍ଲେଖ କରିବି । ସେମାନେ ଖାଣ୍ଟି ନୀତିଗର୍ଭକ ବା ନୀରସ ହିତୋପଦେଶପୂର୍ଣ୍ଣ କାବ୍ୟକୁ ଖୁବ ଉଚ୍ଚରେ ସ୍ଥାନ ଦିଅନ୍ତି । ଇଂରାଜୀରେ ଏପରି ନୀତିକବିତାକୁ (Didactic) କବିତା କହନ୍ତି । ଏହି କାରଣରୁହିଁ ରାଧାନାଥଙ୍କ କବିପ୍ରତିଭାର ବିଶିଷ୍ଟ ପ୍ରତୀକସ୍ୱରୂପ ତାଙ୍କର ନୀତିଗର୍ଭକ (Didactic) ଓ ବିଦ୍ରୂପାତ୍ମକ (Caricature) "ଦରବାର" କାବ୍ୟକୁ ପାଠକପାଠିକାଙ୍କ ସମୀପରେ ଉପସ୍ଥାପିତ କରି ଆମ୍ଭମାନଙ୍କ ବିଶ୍ୱବିଦ୍ୟାଳୟର ସାହିତ୍ୟମହାରଥୀମାନେ ସେମାନଙ୍କର ଚୟନକାରେ ସେମାନଙ୍କର ରସିକତା ତଥା ଭାବୁକତାର ଏଭଳି ପରିଚୟ ଦେଇଅଛନ୍ତି । କିନ୍ତୁ ଏତିକି ରକ୍ଷା ଯେ ଦରବାର ଏକାବେଳକେ ନୀରସ ନୀତିଗର୍ଭକ ନୁହେ । ସେଥିରେ କାବ୍ୟରସର କ୍ଷୀଣଧାରା ମୃଦୁମନ୍ଦପ୍ରବାହରେ ପ୍ରବାହିତ ହୋଇଅଛି । କିନ୍ତୁ ତାହା ବିଦ୍ରୂପବହ୍ନିସ୍ପର୍ଶରେ ଟିକିଏ ଉଷ୍ମତାପ୍ରାପ୍ତ ହେବାକୁ ଶୀତସ୍ନିଗ୍ଧ କାବ୍ୟ ମନ୍ଦାକିନୀଧାରା ନ ହୋଇ ଗୋଟିଏ ଅତିଜନପ୍ରିୟ ଦୈନନ୍ଦିନ ଉଷ୍ଣ ପାନୀୟର କାର୍ଯ୍ୟ କରୁଅଛି ମାତ୍ର । କେହି କେହି ଦରବାରକୁ ଚନ୍ଦ୍ରଭାଗା ଓ ଉଷା ପ୍ରଭୃତି କବିତାଠାରୁ ବହୁ ଉଚ୍ଚରେ ସ୍ଥାନ ଦେବାକୁ ପ୍ରସ୍ତୁତ । ତାହାର କାରଣ କବିତାରେ ନୀତିର ସ୍ଥାନକୁ ମୁଖ୍ୟ କରି ନୀତି-ଗର୍ଭକ କବିତାର ମୋହରେ ପଡ଼ିବା ସମାଲୋଚକଙ୍କ ସଂଖ୍ୟା ଖୁବ ବେଶୀ । ଏ ସୂଚନାଟି ଭଲ ନୁହେ । ନୀତିଗର୍ଭକ କବିତାକୁ କବିତା ପଦବାଚ୍ୟ କରିବାହିଁ ଭାଟିକର ପ.ଠ । କେବଳ ନୀତିମାଳାକୁ ପଦ୍ୟରେ ପରିଣତ କଲେ କବିତା ହୁଏ ନାହିଁ । ତଥ୍ୟାବଳୀ ସଂଗ୍ରହ କରି ଭଷାସୂତ୍ରରେ ଗୁନ୍ଥି ବାଗ୍‌ଦେବୀଙ୍କ ଗଳାରେ ଲମ୍ବାଇଲେ ତାହା ଗନ୍ଧାମୋଦରେ କିମ୍ବା ଶୋଭାସମ୍ପଦରେ ମନୋହର ନ ହୋଇ

ଗୋଟିଏ ବୋଝମାତ୍ର ହେବ ସିନା—ଅଙ୍ଗର ଅଭରଣ ନ ହୋଇ ଅବରଣମାତ୍ର ହେବ । ମୁଁ ଏ କଥା ବାରମ୍ବାର କହି ସୁଦ୍ଧା ପୁନରୁକ୍ତିର ଭୟ କରୁ ନାହିଁ । କାରଣ ପୂର୍ବପର ପୁନରୁକ୍ତ ତ ଥିଲେ ଗୋଟାଏ ଦୋଷ ବୋଲି ପରିଗଣିତ ହେବ ନାହିଁ । ସାହିତ୍ୟଦର୍ପଣୀୟ ଖ୍ୟାତନାମା ଅଲଙ୍କାରିକମାନେ ପୁନରୁକ୍ତିକୁ ଅଲଙ୍କାର ବୋଲି ବିଶ୍ୱବିଦ୍ୟାଳୟର ପ୍ରଦର୍ଶନୀରେ ଉପସ୍ଥାପିତ କରିବାରୁ ମହା ମହା ଚତୁର ରତ୍ନଜୀବୀମାନେ ତାହାର ନିର୍ମାଣକୌଶଳରେ ମୁଗ୍ଧ ହୋଇ ନିପୁଣ ବିଦ୍ୱାନଙ୍କ ମୁଣ୍ଡରେ ଉଷ୍ଣୀଷ ବାନ୍ଧିଦେଇ ମହାର୍ଘ ଅଲଙ୍କାରଟି ମଣିମୟ ମଞ୍ଜୁମଞ୍ଜୁଷାରେ ଅତି ଯତ୍ନରେ ସାଇତି ରଖିଛନ୍ତି । ଏହା ହେଲା ସାହିତ୍ୟାଗୃହୀମାନଙ୍କ କର୍ମ । ଅନ୍ତଃପୁରୀ-ମାନେ ପ୍ରତ୍ୟହ ସନ୍ଧ୍ୟାବେଳେ ମଞ୍ଜୁଷାଟି ପାଖରେ ସଞ୍ଜବତି ଦେଇ ପ୍ରଣାମ କରୁଥିବାର ଅନୁମାନ କରାଯାଏ । ଶୁଣାଯାଏ ମା ସାଇଲା ଝିଙ୍କଡ଼ିରୁ ଆସି ଅଲଙ୍କାରଗୁଡ଼ିକର ଭୂରି ଭୂରି ପ୍ରଶଂସା କରି ଗଲେଣି । କେବଳ ଉପଧାନାମକ ତାଙ୍କର ପାଞ୍ଚପଣ୍ଡୁରିଆ ଖଡ଼ୁ ଯୋଡ଼ାକ ଖୀଡ଼ିଲେଇ ପାରିଲେ ସେ ଏହି ନୂଆ ଧରଣର ଅଲଙ୍କାର କିଛି ଗୋଟାଏ ବୋଲି ମତ ପ୍ରକାଶ କରି ଯାଇଥିଲେ । ଖଡ଼ୁଯୋଡ଼ାକ ତାଙ୍କ ହାତରେ ବସିଯାଇଥିବାରୁ ସେଗୁଡ଼ାକ କିପରି ସହଜରେ ଖୀଡ଼ିଲେଇ ହେବ ? ପୁଣି ସଧବାଙ୍କ ହସ୍ତରୁ ଶଙ୍ଖା ଖଡ଼ୁ କାଢ଼ିବାକୁ ସମସ୍ତେ ରାଜି ହେବେ କି ? ବାଲ୍ୟ ମାତାଙ୍କର ଏ ବୟସରେ ନୂଆ ଅଲଙ୍କାରସ୍ପୃହା ଦେଖି "ସ୍ତ୍ରୀବୁଦ୍ଧିଃ ପ୍ରଳୟଙ୍କରୀ" କହିବାଟା ସମୀଚୀନ ହେବ ନାହିଁ ବରଂ "କାଳସ୍ୟ କୁଟିଳା ଗତିଃ" କହି ନୀରବ ହେଲି । ଏ କଥାର ଅଭ୍ୟାସରୁ ଲକ୍ଷଣା ଓ ବ୍ୟଞ୍ଜନାର ପରସ୍ପର ଯେ ଭେଦ ବେଶୀ ତାହା ପ୍ରଣିଧାନଯୋଗ୍ୟ ।

ତେଣୁ ପୁନରୁକ୍ତି ଦୋଷ ନ ହୋଇ ବ୍ୟାପାର ଅଲଙ୍କାରରୂପରେ ସ୍ୱୀକୃତ ହେଉଥିବା ସ୍ଥଳରେ ମୁଁ ପୁନରୁକ୍ତିକୁ ଭୟ ନ କରି ପୁଣି କହିବି

କେବଳ ନୀତିଗର୍ଭକ ଉପଦେଶମାଳା କଣ୍ଠସ୍ଥ କରି କେହି ନୈତିକଜୀବନର ଉନ୍ନତି କରି ପାରେ ନାହିଁ ।

"ଦୁର୍ଜନଃ ପରିହର୍ତ୍ତବ୍ୟୋ ବିଦ୍ୟୟା-ଲଙ୍କୃତୋଽପି ସନ୍,
ମଣିନା ଭୂଷିତଃ ସର୍ପଃ କିମସୌ ନ ଭୟଙ୍କରଃ ।"

ଏ ନୀତିଗର୍ଭକ ହିତୋପଦେଶକୁ ଜାଣି ନାହିଁ କିଏ ? ଦୁର୍ଯ୍ୟୋଧନ କେବେ ଶକୁନିମାମୁଙ୍କ କବଳରେ ପଡ଼ି ସବଂଶରେ ଧ୍ୱଂସ ହେଲେ କପରି ? ଓଥେଲୋ ନରପିଶାଚ ଇୟାଗୋର ଦୁରଭିସନ୍ଧି ବୁଝି ନ ପାରି କେଶରୁ କି ଭୀଷଣ ବିପଦରେ ପଡ଼ିଥିଲେ, ତାହା ସେକ୍ସପିଅରଙ୍କ ନାଟକ ପଢ଼ିଥିବା ଲୋକେ ଜାଣିଥିବେ । ମୁଁ ମଧ୍ୟ ତାହା ଅନେକ ଥର ପଢ଼ିଥିବାରୁ ସମ୍ୟକ୍ ହୃଦୟଙ୍ଗମ କରିଅଛି—ଇୟାଗୋର ଅହେତୁକୀ ହିଂସାପରାୟଣତା ଯେ ବିଶୁଦ୍ଧ କବିକଳ୍ପନା ନୁହେ ଏବଂ ବାସ୍ତବଜଗତରେ ସେହିପରି ବିଦ୍ୟାଳଙ୍କାରଭୂଷିତ ନରପିଶାଚ ଅବତୀର୍ଣ୍ଣ ହେବା ଅସମ୍ଭବ ନୁହେଁ; ଏକଥା ମୁଁ ମୁକ୍ତକଣ୍ଠରେ ସ୍ୱୀକାର କରେ । କିନ୍ତୁ ନୀତିଗର୍ଭକ ଉପଦେଶଟି କେବେହେଁ ବିସ୍ମୃତ ହୋଇ ନ ଥିଲେହେଁ ମୋର ସ୍ୱାଭାବିକ ହୃଦୟ-ଦୌର୍ବଲ୍ୟଜନିତ ପ୍ରଲୋଭନରୁ ତାହାର କବଳରେ ପଡ଼ି ଦୁର୍ଯ୍ୟୋଧନ ଓଥେଲୋଙ୍କ ଦୁର୍ଦ୍ଦଶା ବରଣ କଲି । ତାହାର କାରଣ ବିଶୁଦ୍ଧ ନୀତିର ପ୍ରଭାବ ହୃଦୟ ଉପରେ ଅତିକ୍ଷୀଣ । ତେଣୁ ନୀତିଗର୍ଭକ କବିତା-ପାଠରେ ହୃଦୟର ନୈସର୍ଗିକ ଦୁର୍ବଳତା ବିଦୂରିତ ହୁଏ ନାହିଁ । ତେଣୁ ହୃଦୟ ସ୍ପର୍ଶ କରିବା ଭଳି କଳାକୃତିର ପ୍ରୟୋଜନୀୟତା ଉପଲବ୍ଧି କରାଯାଏ । ରସପରିବେଶନ ତେଣୁ କଳାକୃତିର ପ୍ରଧାନ ଲକ୍ଷଣ ବୋଲି ସ୍ୱୀକାର୍ଯ୍ୟ ।

"ସାଧୁ ସୁଜନ ସଙ୍ଗତରେ ଧନ୍ୟ ସେ ନିତ୍ୟ ବାସ କରେ" ।

ଏହା ଗୋଟିଏ ସାଧୁ ଉପଦେଶ ହେଲେହେଁ କାବ୍ୟାଂଶ ନୁହେ । କବି ରସିକ ଓ ଭାବୁକ, କବି ଦାର୍ଶନିକ ନୁହେ, କି ପ୍ରଚା-ରକ ନୁହେ—ସେ କଳାଜୀବୀ—ସେ ସୌନ୍ଦର୍ଯ୍ୟକାଙ୍ଗାଳ—ହୃଦୟରାଜ୍ୟ

ଉପରେ ତାହାର ସ୍ୱତ୍ୱ ଏକଛତ୍ର—କଳାଜୀବୀମାନେ ଅଷ୍ଟୋତ୍କର୍ଷ ଭୂମିକାରେ ସାର୍ବଭୌମ ସମ୍ରାଟ୍। ଇଂଲଣ୍ଡର ସାହିତ୍ୟିକମାନେ ଏହା ସମ୍ୟକ୍ ଉପଲବ୍ଧି କରି ନୀତିବାଦୀ କବିସମ୍ପ୍ରଦାୟକୁ କଅଁ ପାଣି ବନ୍ଦର ବ୍ୟବସ୍ଥା କରି ଏକଘରିଆ କରି ରଖିଥିଲେ। ସେହି ଅପାଂକ୍ତେୟ କବିମଣ୍ଡଳୀର ସୁନାମଖ୍ୟାତ ନେତା ଓ ତତ୍କାଳୀନ ବାଣୀପୀଠର ପଞ୍ଚପୁରୋଧ କବିବର ପୋପଙ୍କୁ ( Alexander Pope ) ନୀତିବାଦୀ ଅକବି ଅଭିଖ୍ୟାରେ ଅର୍ଦ୍ଧଚନ୍ଦ୍ର ଦେଇ ବିଦାୟ କରିଦେଲେ।

କେହି କେହି ଏଥିରୁ ଏପରି ଅନୁମାନ କରି ବସିବେ ମୁଁ ନୀତିମତ୍ତା ବା ହିତୋପଦେଶର ଘୋର ବିରୋଧୀ। ଅନୀତିର ପୂର୍ଣ୍ଣ ପୃଷ୍ଠପୋଷକ। କିନ୍ତୁ ମୁଁ ନୀତିର ଶତ୍ରୁ ନୁହେ, କି ଅନୀତିର ସମର୍ଥକ ନୁହେ। ମୋର ମତ—ନୀତି ଗୌଣଭାବରେ ପ୍ରଚ୍ଛନ୍ନ ଓ ଅପ୍ରକଟ ଥାଇ ଅଲକ୍ଷିତ ଭାବରେ ହୃଦୟ ଉପରେ ପ୍ରଭାବ ବିସ୍ତାର କରୁ। ସୌନ୍ଦର୍ଯ୍ୟର ଛଦ୍ମରେ ଆନନ୍ଦମୟ ବିଗ୍ରହ ଧରି ହୃଦୟକୁ ପ୍ରଭାବିତ କରୁ। ସତ୍ୟ, ଶିବ ଆସନ୍ତୁ, କିନ୍ତୁ ଚିରସୁନ୍ଦର ବରେଣ୍ୟ ବିଗ୍ରହ ପରିଗ୍ରହ କରି— ନଇଁବା ହୃଦୟକୁ ସ୍ପର୍ଶ କରି ପ୍ରଭାବିତ କରିବାର ଅନ୍ୟ ଉପାୟ ନାହିଁ।

ନୀତିବାକ୍ୟ ବା ହିତୋପଦେଶ କି କେବେ ଅହିତକର ହୋଇ ପାରେ ? ତେବେ ମନୁଷ୍ୟ ହୃଦୟର ଅଧୁନାତନ ଏହି ଉଦବେଗଜନିତ ଘୋରବିକାରଗ୍ରସ୍ତ ଅବସ୍ଥା ଦେଖି ତାହାର ଅନୁକୂଳ ବ୍ୟବସ୍ଥା କରିବା ଉଚିତ। ଯେପରି ପିତ୍ତବିକାରଗ୍ରସ୍ତ ରସନାକୁ ମିଶ୍ରି ପିତା ଲାଗେ, ସେହିପରି ମନୁଷ୍ୟର ଉଦବିକାରଗ୍ରସ୍ତ ହୃଦୟକୁ ଶ୍ରେୟ ଭଲ ଲାଗେ ନାହିଁ। ସେ ତେଣୁ ଆପାତମଧୁର ଓ ପରିଣାମରେ ଅଶୁଭପ୍ରଦ ପ୍ରେୟକୁ ଆଲିଙ୍ଗନ କରେ। ପ୍ରେୟ ଯେ ଶ୍ରେୟ ନୁହେ, ତାହା ତାହାର ହୃଦୟଙ୍ଗମ ହୁଏ ନାହିଁ। ଅନାଦି-ବହିର୍ମୁଖ ଜୀବ ଶାଶ୍ୱତକୁ ଛାଡ଼ି ନଶ୍ୱରକୁ, ଚେତନକୁ ଭୁଲି ଜଡ଼କୁ, ପରମାର୍ଥକୁ ଛାଡ଼ି ଅର୍ଥକୁ ଓ ଆତ୍ମାକୁ ଭୁଲି ଦେହକୁ ଏବଂ ଶ୍ରେୟକୁ ପରିତ୍ୟାଗ କରି ପ୍ରେୟକୁ ଆଦର କରେ। ତାହାର ଏହି ଓଲଟା ବୁଦ୍ଧି ଦେଖି

କବି ତାକୁ 'ଉତ୍ତାନପାଦ' ନାମରେ ଅଭିହିତ କରିଅଛନ୍ତି । ଦୁଇଗୋଡ଼ ଉପରକୁ ଟେକି ଓ ବାହୁଦ୍ୱୟ ଉପରେ ଭର ଦେଇ ଚାଲିବା ଯେପରି ହାସ୍ୟାସ୍ପଦ ଓ ଅସ୍ୱାଭାବିକ, ତାହାର କାର୍ଯ୍ୟକଳାପ ଓ ଓଲଟା ବୁଝାମଣା ଠିକ ସେହିପରି ନୁହେଁ କି ? ସେ "ସୁନୀତିରାଣୀ"ଙ୍କୁ ବନବାସ ଦେଇ "ସୁରୁଚି"ଙ୍କ ସଙ୍ଗରେ ରହିବାକୁ ବେଶି ପସନ୍ଦ କରେ । ସୁରୁଚିର ସେବା ( ପ୍ରେୟର ସେବା ) ତାର ରୁଚିକୁ ଏତେ ଭଲ ଲାଗିଛି ଯେ ଜୀବନର ଧ୍ରୁବ-ଜ୍ୟୋତିସ୍ୱରୂପ ପୁତ୍ରରତ୍ନର ଗର୍ଭଧାରଣୀ "ସୁନୀତି"ଙ୍କୁ (ଶ୍ରେୟ) ସେ ଅନ୍ତଃସତ୍ତ୍ୱା ଅବସ୍ଥାରେ ଘୋରବନରେ ଛାଡ଼ି ନିଶ୍ଚିନ୍ତରେ ଅଛି । ସୁରୁଚିର ଇଚ୍ଛା ବିରୁଦ୍ଧରେ ନିଜର ପୁତ୍ରକୁ ମଧ୍ୟ କୋଳକୁ ନେବାକୁ କୁଣ୍ଠିତ । ରତ୍ନଗର୍ଭା ସୁନୀତିର ଗର୍ଭଜାତ ପୁତ୍ରରତ୍ନର ପିତା ହୋଇ ସୁରୁଚିର ମୋହଜାଲରେ ପଡ଼ି ଚଳିବାକୁ ନାରାଜ । ଏହାହିଁ ସାଧାରଣ ମନୁଷ୍ୟର ହୃଦୟର ଅବସ୍ଥା—ଜୀବନର ଏକମାତ୍ର ଧ୍ରୁବ-ଜ୍ୟୋତିର ଜନନୀ ଶ୍ରେୟଃରୂପିଣୀକୁ ବର୍ଜନ କରି ସୁରୁଚିକୁ (ପ୍ରେୟ-ଯାହା ଭଲ ଲାଗେ) ବରଣ କରି ନେବା । ଏପରି ସ୍ଥଳରେ ଡାକ୍ତରେ ଯେପରି କଟୁତିକ୍ତ ଔଷଧକୁ ଚିନିପୁଟ ଦେଇ କିମ୍ବା ମଧୁପରଖ ଦେଇ ରୋଗୀକୁ ସେବନ କରାଏ, ସେହିପରି କଳାବିତ୍‌ମାନେ ଶ୍ରେୟକୁ ସୌନ୍ଦର୍ଯ୍ୟର ଛାଞ୍ଚରେ ଢାଳି ପ୍ରେୟ ରୂପରେ ଉପସ୍ଥାପିତ କରନ୍ତି । ସତ୍ୟଶିବର ବରେଣ୍ୟମୂର୍ତ୍ତିକୁ ମାଧୁର୍ଯ୍ୟରସାଣରେ ରସାଣିତ କରି ହୃଦୟରଞ୍ଜକ ସୁବିଗ୍ରହରେ ଉପସ୍ଥାପିତ କରନ୍ତି ।

"କହି ଜାଣିଲେ କଥା ସୁନ୍ଦର" । ଏହି କହି ଜାଣିବାହିଁ କାବ୍ୟକଳା । ଏପରି ଭାବରେ, ଏପରି ଭଙ୍ଗୀରେ କଥା କହାଯାଇ ପାରେ ଯେ ତାହା ଠିକ୍ ଟଙ୍କଣର ପରି ହୃଦୟଫଳକରେ ଖୋଦିତ ହୋଇ ଯାଏ ଏବଂ ମର୍ମେ ମର୍ମେ ତାହାର ପ୍ରଭାବ ଜଣାପଡ଼େ । ଲୋକେ କହନ୍ତି, ତାହାର କଥାରେ ମୋର କଲିଜାରେ ଛୁରି ମାରି ହୋଇଗଲା । ହେବାର କଥା । ସେହିପରି କାବ୍ୟକଳାବିତ୍ କବି ଜାଣେ କିପରି ଭାବରେ ଥୋଇଦେଲେ କଥାଟା ଠିକ୍ ମନକୁ ଛୋଇବ, ମର୍ମେ ମର୍ମେ ଭେଦ-

ଯିବ ଏବଂ ହୃଦୟକୁ ଗାଣ୍ଠିଚକରି ପକାଇ ଗୋଟାଏ ଆନ୍ଦୋଳନ ବା ବିପ୍ଳବ ସୃଷ୍ଟି କରିଦେବ ।

ଜଣେ ଜଣେ ବିଶ୍ଲେଷଣ କରି ଦେଖିଲେ ଜଣାଯିବ ଯେ ବାକ୍ୟ କଳାବିଶାରଦ ନିପୁଣ କବି ସେହି ବ୍ରହ୍ମାସ୍ତ୍ରଟି ପ୍ରୟୋଗ କରିବା ପୂର୍ବରୁ ନାନା ରସ ପରିବେଷଣଦ୍ୱାରା ହୃଦୟକ୍ଷେତ୍ରକୁ ସରସ ଓ ଅନୁକୂଳ କରି ଆଣେ । ଠିକ ସେହି ସମୟରେ ତାହାର ଶବ୍ଦଭେଦୀଟି ଛାଡ଼ିଦେଲେ, ତାହା ଅନୁକୂଳ ଅବସ୍ଥାପ୍ରାପ୍ତ ହୃଦୟକୁ ହଠାତ୍ ଆଲୋଡ଼ିତ କରି ପକାଏ । କୃଷ୍ଣକାବ୍ୟର ରଚନାକୌଶଳରୁ ଏହା ସ୍ପଷ୍ଟ ଜଣାପଡ଼େ । ଗିରୀଶଚନ୍ଦ୍ରଙ୍କ 'ପ୍ରଫୁଲ୍ଲ' ନାଟକର ନାୟକ 'ଯୋଗେଶ' କର୍ମସୂତ୍ର ଦ୍ୱାରା ସର୍ବସ୍ୱାନ୍ତ ହୋଇ ନାନା ଭାଗ୍ୟବିପର୍ଯ୍ୟୟର ମଧ୍ୟଦେଇ ଜୀବନର ଶେଷ ମୁହୂର୍ତ୍ତରେ ଉପସ୍ଥିତ ହୋଇଛନ୍ତି । କବି ଦର୍ଶକମଣ୍ଡଳୀଙ୍କ ହୃଦୟକୁ ଯୋଗେଶଙ୍କ ନୈରାଶ୍ୟପୂର୍ଣ୍ଣ ହୃଦୟ ସଙ୍ଗରେ ସମବେଦନାର ସୂତ୍ରରେ ଗୁନ୍ଥିଦେଇ ସାରିଲେଣି । ଠିକ ଏହି ସମୟରେ ଯୋଗେଶ ଏକ ଗଭୀର ଦୀର୍ଘନିଃଶ୍ୱାସ ପକାଇ କହି ଉଠିଲେ, "ଆମାର ସାଜାନ ବାଗାନ ଶୁକିୟେଗେଛେ" । ଯୋଗେଶଙ୍କ ଭୂମିକାରେ ସ୍ୱୟଂ ଗିରୀଶ ବାବୁ ଏହି କଥାଟି ଯେଉଁପରି ଭଙ୍ଗୀରେ କହୁଥିଲେ, ତାହାର ପୂର୍ଣ୍ଣାଙ୍ଗ ଅନୁକରଣ ଅଦ୍ୟାପି ବଙ୍ଗ ରଙ୍ଗମଞ୍ଚରେ ସମ୍ଭବପର ହୋଇ ନାହିଁ । କଥିତ ଅଛି ଗିରୀଶ ବାବୁ ଏ କଥାଟି ଏପରି ନାଟକୀୟ ଭଙ୍ଗୀରେ କହି ପାରୁଥିଲେ ଯେ ସକଳ ଦେଖଣାହାରୀଙ୍କ ହୃଦୟରେ ଯୁଗପତ୍ ବିଜୁଳି ଖେଳିଗଲା ପରି ସେହି ଦୀର୍ଘ ନିଃଶ୍ୱାସଟି ସଂକ୍ରାମିତ ହୋଇ ଯାଉଥିଲା । କବିତା ଯେ ହୃଦୟ ସ୍ପର୍ଶ କରେ, ଏହା ଅତି ଖାଣ୍ଟି କଥା ।

କବିତା ତ ଦୂରର କଥା—ସାଧାରଣରେ ବ୍ୟବହୃତ ସାମାନ୍ୟ ଖାଣ୍ଟି କଥା ମଧ୍ୟ ସମୟ ସମୟରେ ହୃଦୟକ୍ଷେତ୍ରର ଉର୍ବରତାନୁସାରେ ଖୁବ୍ ପ୍ରଭାବାନ୍ୱିତ ହୋଇପଡ଼େ । ସମସ୍ତେ ଜାଣନ୍ତି, କଲିକତାର ପୁଣ୍ୟଶ୍ଲୋକ ଭୂମ୍ୟଧିକାରୀ ଦୂରରୁ 'ଦିନ ତ ଗେଲ ସନ୍ଧ୍ୟା ହଲ' ଏହି କଥାଟି ଶୁଣି ହଠାତ୍ ବୈରାଗ୍ୟ ଜାତ ହେବାରୁ ଗିରିକାରୁ ଅବତରଣ

କରି ବୃନ୍ଦାବନ ଯାତ୍ରା କଲେ । ତାଙ୍କର ପ୍ରତିଷ୍ଠିତ 'ଗଲତାରୁ କୁଞ୍ଜ' ଶ୍ରୀ ବୃନ୍ଦାବନଧାମର ଅନ୍ୟତମ ଦର୍ଶନୀୟ ସ୍ଥାନ ଅଟେ ।

ମଞ୍ଜୁମଞ୍ଜରୀନସେବିତ ବାଲେଶ୍ୱରର ସୁନହଟନିବାସୀ ବିଖ୍ୟାତ ସାମନ୍ତବଂଶାବତଂସ କବି ୰ଅଭୟଚନ୍ଦ୍ର ଦାସଙ୍କ ପିତା ୰ଗୋବିନ୍ଦଚନ୍ଦ୍ର ଦାସ ମହୋଦୟ ସେହିପରି ଜଣେ ବାଠୋଇ ମୁହଁରୁ 'କୁଳ ମନ କୁଳ କାହିଁକି' ଏହିପରି ଗୋଟାଏ ଗୀତ ଶୁଣି ଜମିଦାରୀ ଘରଦ୍ୱାର ବହୁମୂଲ୍ୟ କାଗଜପତ୍ରମାନ ଫୋପାଡ଼ି ଦେଇ ଧାମଯାତ୍ରା କଲେ । ତାହାପରେ ଶ୍ରୀବୃନ୍ଦାବନଧାମରେ ୨୧ ବର୍ଷ ବାସ କରି ନିତ୍ୟଲୀଳାରେ ପ୍ରବେଶ ଲାଭ କଲେ ।

ଏସବୁ ଦେଖି ଶୁଣି ହୃଦୟରେ ଭାରି ଆଶାର ସଞ୍ଚାର ହୁଏ । କବିତା ଓ ସଙ୍ଗୀତ ଯେପରି ସହଜରେ ହୃଦୟକୁ ସ୍ପର୍ଶ କରେ, ଅନ୍ୟଦ୍ୱାରା ତାହା ସମ୍ଭବ ନୁହେଁ । ସେଥିପାଇଁ କହୁଅଛୁ, କବିତା ବା ସଙ୍ଗୀତ-କଳାର ଘନଘନ ଅନୁଶୀଳନଦ୍ୱାରା ହୃଦୟକୁ ସରସ ଓ ଉର୍ବର କରି ରଖିଥିଲେ ଯିନା ଶୁଭ ଅକ୍ଷୟବୃତ୍ତୀୟା ତିଥି ହଠାତ୍ ହାବୁଡ଼ ଗଲେ, ବିହନ ମୁଣ୍ଡାଏ ବେଳକାଳ ଭଳି ଫୋପାଡ଼ି ଦେଇ ପାରିବା । ଗୃହୀ ହୁଡ଼ିଲେ ବରଷେ, କିନ୍ତୁ ଆମେ ହୁଡ଼ିଲେ ସାରା ଜୀବନଟା ଅନୁତପ୍ତ ହେବାକୁ ହେବ । ହୁଏତ ପୁଣି ଚୌରାଶୀଲକ୍ଷ ଯୋନିଭ୍ରମଣର ବ୍ୟବସ୍ଥା ହେବ । "ବହନ୍ତା ନଦୀରେ ମାଣିକ୍ୟ ହଜାଇ ଅଇ କି ଖୋଜିଲେ ପାଇ" ଏହିପରି ହାହୁତାଶ କରୁ କରୁ ଜୀବନଦୀପ ନିର୍ବାଣପ୍ରାପ୍ତ ହେବ । ତେଣୁ ଗାରେ ହଗାରେ ଦେଇ ହୃଦୟକେଦାରକୁ ପ୍ରସ୍ତୁତ ରଖିବାହିଁ ଚତୁର ଲୋକର କର୍ମ । ନୀରସ କର୍କଶ ଥିଲେ ସେ ହୃଦୟକ୍ଷେତ୍ରରେ କୌଣସି କୃଷିକାର୍ଯ୍ୟ ସମ୍ଭବ ହେବ ନାହିଁ । କିନାକର୍ଷଣରେ ତାର ସ୍ୱାଭାବିକ କଠିନତା ଦୂର ହେବ କିପରି ଓ ତାହାର ବେଣାଗୁଳ୍ମଗହଳ ଛାଡ଼ି ନିର୍ମଳ ହେବ କିପରି ?

କର୍ଷଣର ଅର୍ଥ କଅଣ ? କାବ୍ୟ, ଉପନ୍ୟାସ, ସଙ୍ଗୀତ ପ୍ରଭୃତିର ଘନଘନ ଅନୁଶୀଳନ କରୁଁ କରୁଁ ମଧ୍ୟେ ମଧ୍ୟେ ଆନନ୍ଦର ଉଚ୍ଛ୍ୱାସ ଘଟିଲେ ହୃଦୟରେ ଗୋଟାଏ ସାମୟିକ ଉନ୍ମାଦନା ଖେଳଯାଏ । ସ୍ଥାୟୀ କ

ହେଲେହେଁ ତାହା ହୃଦୟକୁ ପୂର୍ବାପେକ୍ଷା କୋମଳ କରିଦିଏ । ଏହିପରି ବାରମ୍ବାର କରୁଁ କରୁଁ ହୃଦୟଟି ଖୁବ ଭାବପ୍ରବଣ, ସରସ ଓ ଉର୍ବର ହୋଇଉଠେ । ସିନେମା ବା ଦୃଶ୍ୟକାବ୍ୟର ଅଭିନୟ ଦ୍ୱାରା ଚିତ୍ତାକର୍ଷକ ହେଲେ ହୃଦୟକୁ କ୍ଷଣଭାବରେ ଆନ୍ଦୋଳିତ କରେ । ଆମ୍ଭମାନଙ୍କ ଦୁର୍ଭାଗ୍ୟବଶତଃ ହୃଦୟକୁ ପବିତ୍ର ଓ ମଧୁରଭାବରେ ଆପ୍ଲୁତ କରିଦେବାଭଳି ଦୃଶ୍ୟକାବ୍ୟ ଓ ଦୃଶ୍ୟାବଳି ଖୁବ୍ ବିରଳ । ଉଚ୍ଚ ଭାବର ରସପରିବେଶନ କ୍ୱଚିତ୍ ଦେଖିବାକୁ ମିଳେ । ଇତରଶ୍ରେଣୀର ନିମ୍ନଗାମୀ ହୃଦୟକୁ ଇତରରସ-ପରିବେଶନଦ୍ୱାରା ଆହୁରି ଅଧୋଗାମୀ କରିଦେବା ଲଳିତକଳାର ଉଦ୍ଦେଶ୍ୟ ନୁହେ । ଚିରସୁନ୍ଦରର ଭାବପ୍ରେମମୟମୂର୍ତ୍ତିର ଉପାସନାହିଁ ଶିଳ୍ପକଳାର ଆଦର୍ଶ । ସତ୍ୟଶିବସୁନ୍ଦରଙ୍କ ମନୋଜ୍ଞରୂପମାଧୁରୀଧାରା ଜନତାର ତାପିତପ୍ରାଣରେ ମନ୍ଦାକିନୀର ସ୍ନିଗ୍ଧଶୀକରଲେପର କାର୍ଯ୍ୟ କରେ । କିନ୍ତୁ ଆଧୁନିକ ଚିତ୍ରାବଳିରେ ତାହା ହୁଏ କି ? ଜନତାର କୁତ୍ସିତ ମନୋବୃତ୍ତିକୁ କୁତ୍ସିତତର କରି ସେମାନଙ୍କର ହୃଦ୍‌ବେଗର ଉପଶମ ତ ବହୁଦୂରର କଥା, ବେଗବୃଦ୍ଧିର ବିପୁଳ ଲୋଭଜନକ ପ୍ରୟାସହିଁ ଆଜିକାଲିକାର ଯୁଗଧର୍ମ ହୋଇପଡ଼ିଛି । ଆମ ଦେଶର ହୀନ ଜ୍ଞାନ ଅଶିକ୍ଷିତ ଜନତା ଓ ସୁକୁମାରମତି ବାଳକବାଳିକାମାନେ ଚରିତ୍ର-ଗଠନ ଓ ଆତ୍ମୋନ୍ନତିର କି କି ଉପାଦାନ ଘେନି ଅଭିନୟମଞ୍ଚରୁ ବାହୁଡ଼ନ୍ତି ? ଏ କଥା ପଚାରିବାକୁ ମଧ୍ୟ ଡର ମାଡ଼ୁଛି । କେବଳ କ୍ଷଣିକ ଆନନ୍ଦ ପାଇଁ କି ଲଳିତକଳାର ସେବା ? ଏହାକୁ କଅଣ ଆନନ୍ଦ-ପଦ-ବାଚ୍ୟ କରିବା ସମୀଚୀନ ହେବ ? ଅଭିନେତୃଦଳର କର୍ତ୍ତୃପକ୍ଷମାନଙ୍କ ଦୃଷ୍ଟି ନିବଦ୍ଧ ରହିଛି ନିଜର ସ୍ୱାର୍ଥସିଦ୍ଧି ଉପରେ—ଦେଶର ମଙ୍ଗଳ ଉପରେ ନୁହେ । ଏମନ୍ତ କି କିଛିହେଁ ସ୍ୱାର୍ଥତ୍ୟାଗ ନ କରି ମଧ୍ୟ ଦେଶର ପ୍ରଭୂତ କଲ୍ୟାଣ ସମ୍ପାଦିତ ହୋଇ ପାରେ ଟିକିଏ ଉଦାରଚେତା ହେଲେ । ଦୃଶ୍ୟକାବ୍ୟଟି ଉପଭୋଗ କରି ଫେରିଲା ଜନତା କି ଆନନ୍ଦକଣା ନେଇ ଯାନ୍ତି ? ସେ ଆନନ୍ଦର ମୂଲ୍ୟ କେତେ ? ଏ କଥା ଟିକିଏ ଭାବିଲେହିଁ ବ୍ୟବସାୟୀର ଦୃଷ୍ଟିକୋଣ

ବଦଳସାଅନ୍ତା । ଅହୋ, ଜାତୀୟବୁଦ୍ଧିର କି ଘୋର ବିପର୍ଯ୍ୟୟ ଘଟିଲାଣି । ଏହି ଉତ୍କଳଖଣ୍ଡରେ ଥିଲେ ପାଲବାଲାମାନେ, ଯେଉଁମାନଙ୍କର ସାହିତ୍ୟରସପରିବେଷଣର କଥା ମନେ ପଡ଼ିଲେ, ଅତୀତ ଉତ୍କଳର ଗୌରବମହିମାର କଥା ସ୍ୱତଃ ମନରେ ଜାଗରୂକ ହୋଇଉଠେ, ସେମାନଙ୍କ ମୁଖରୁ ଯେଉଁମାନେ ଉତ୍କଳର ପ୍ରାଚୀନ କବିତାର ଅବୃତ୍ତି ଓ ରସାତ୍ମିକା ବ୍ୟାଖ୍ୟା ଶୁଣିଛନ୍ତି, ସେମାନେ କିପରି ଏହି ପ୍ରାଚୀନ ସାହିତ୍ୟ ପ୍ରତି ବୀତଶ୍ରଦ୍ଧ ହେବେ ? ଉପେନ୍ଦ୍ରଙ୍କ ଗନ୍ତାଘରର ଚାବୀ ତାଙ୍କର ନିପୁଣ ହସ୍ତରେହିଁ ଥିଲା । ସେ ସାହିତ୍ୟଭଣ୍ଡାର ଅଳି ଲୋହି ଖୋଲି ପାରୁ ନାହାନ୍ତି ବୋଲି ସଞ୍ଚିତ ରତ୍ନର ଛଟା ଆମ୍ଭମାନଙ୍କୁ ସ୍ପର୍ଶ କରୁ ନାହିଁ । କାବ୍ୟର ରସ ମୂର୍ତ୍ତିମାନ୍ ହୋଇ କିପରି ହୃଦୟକୁ ଆକର୍ଷଣ କରେ, ତାହା ସେହିମାନେହିଁ ଜାଣିଥିଲେ ।

ରସପରିବେଷଣହିଁ କାବ୍ୟକଳାର ଚରମ ଆଦର୍ଶ । ଏହି ରସପୁଷ୍ଟିହିଁ ଲଳିତକଳାର ଲକ୍ଷ୍ୟ । ଅଳଙ୍କାରିକର ପ୍ରତ୍ୟେକ ଛନ୍ଦ ବା ଦୃଶ୍ୟକାବ୍ୟାଭିନୟରେ ବୀଭତ୍ସ ଅଦ୍ଭୁତରସର ପ୍ରାବଲ୍ୟ ଲକ୍ଷିତ ହୁଏ । "ଜୟଦେବ" ଓ "ଚଣ୍ଡୀଦାସ" ପ୍ରଭୃତି ଚଳଚ୍ଚିତ୍ର ଶୃଙ୍ଗାରରସପ୍ରଧାନ ହେବା ଉଚିତ କି ? ଅଦ୍ଭୁତରସବହୁଳ ନ ହେଲେ ବ୍ୟବସାୟୀଙ୍କ ଲାଭଜନକ ହେବ ନାହିଁ ଏହି ଅଶଙ୍କାରେ "ଜଗନ୍ନାଥ" ନାମ ପ୍ରଖ୍ୟାତ ଚଳଚ୍ଚିତ୍ରରେ ଭକ୍ତିରସକୁ ଆଚ୍ଛାଦିତ କରି ଶୃଙ୍ଗାରରସହିଁ ହୃଦୟ ଉପରେ ଏକଚ୍ଛତ୍ରାଧିପତ୍ୟ ବିସ୍ତାର କରି ପକାଏ । ତାହା ଗୌଣ ନ ହୋଇ ମୁଖ୍ୟ ହୋଇ ଉଠେ । ଆଧୁନିକ କଳାପରିବେଷଣର ଦୋଷ ଦର୍ଶାଇବା ମୋ ଭଳି ଅକିଞ୍ଚନ ପକ୍ଷରେ ଅମାର୍ଜ୍ଜନୀୟ ଧୃଷ୍ଟତା ମାତ୍ର । ଏହି ଗଣତନ୍ତ୍ର ଯୁଗରେ ମୋର ପକ୍ଷ ସମର୍ଥନ କରିବା ତ ଦୂରର କଥା, ମୋର ପ୍ରସ୍ତାବକୁ ଅନୁମୋଦନ କରିବା ଭଳି ଦ୍ୱିତୀୟ ଲୋକ ଖୋଜି ପାଇବା ଅସମ୍ଭବ । ମୋର ଦୋଷ ଦର୍ଶାଇବାଟା କେବଳ ଅରଣ୍ୟ-ରୋଦନ ନାହିଁକି; ତାହାଠାରୁ ମଧ୍ୟ ହୀନ ହେବ । କାରଣ ଅରଣ୍ୟ-ରୋଦନ ତ ହେଲେ ବ୍ୟାଘ୍ର ଭଲ୍ଲୁକ ପ୍ରଭୃତି ହିଂସ୍ରଜନ୍ତୁମାନେ ଶୁଣିଲେ

ଶୁଣିପାରନ୍ତି । କିନ୍ତୁ ଏଠାରେ ମୋର କରୁଣବିଳାପ ଶୁଣିବା ଭଳି ଅବସର କାହାର ଅଛି ?

ମୋର କହିବାର ଉଦ୍ଦେଶ୍ୟ ଏହି ଯେ ଦୃଶ୍ୟକାବ୍ୟର ଅଭିନୟ ସୁରୁଚିସମ୍ପନ୍ନ ହେଲେ ସେଥିରେ ମନୁଷ୍ୟର ଆତ୍ମୋତ୍କର୍ଷର ବୀଜ ସହଜରେ ଅଙ୍କୁରିତ ହୋଇଉଠେ । ଏହି ମହତ୍ ଉଦ୍ଦେଶ୍ୟସାଧନ-ବିତରୁହିଁ ଲଳିତକଳାର ସୃଷ୍ଟି । ଅସାର, ଅଳୀକ, ଆପାତମଧୁର, ଇତରଗ୍ରାମସମ୍ଭୂତ, କ୍ଷଣିକ ଆନନ୍ଦର ସ୍ଥାନରେ ଶାଶ୍ୱତ, ନିତ୍ୟ, ପରମ, ମହାନନ୍ଦର ପରିବେଶନହିଁ କଳାକୃଷ୍ଟିର ଲକ୍ଷ୍ୟ । ପ୍ରତ୍ୟେକ ଅଭିନୟ ଶେଷରେ, ପ୍ରତ୍ୟେକ ନରନାରୀ ଯଦି ପୂର୍ବାପେକ୍ଷା ଟିକିଏ ଉନ୍ନତତର ନ ହୁଏ, ତେବେ ଲଳିତକଳାର ଶ୍ରମ ବିଫଳ ହେଲା ବୋଲି ଜାଣ । ତାହାହେଲେ ତାହା ଧନାର୍ଜ୍ଜନର ଗୋଟିଏ ସହଜ ଓ ସୁଗମ ପନ୍ଥା ; ମା ସରସ୍ୱତୀଙ୍କ ପୂଜୋପକରଣ ଦ୍ୱାରା ବିମାତାଙ୍କ ଷୋଡ଼ଶୋପଚାରରେ ଆରାଧନା । ଏପରି କଳାକୃତିରେ ଆତ୍ମୋନ୍ନତିର ସଙ୍କେତ ଖୋଜିବା ବିଡ଼ମ୍ବନା ମାତ୍ର ।

# ବିଶ୍ୱକବି ରବୀନ୍ଦ୍ରନାଥ

ଶ୍ରୀ ରବୀନ୍ଦ୍ରନାଥ କଲିକତା ନଗରୀର ଜୋଡ଼ାସାଙ୍କୋର ସ୍ୱନାମଧନ୍ୟ ମହର୍ଷି ୰ ଦେବେନ୍ଦ୍ରନାଥଙ୍କ କନିଷ୍ଠପୁତ୍ରରୂପେ ଓ ରଜା ୰ଦ୍ୱାରକାନାଥଙ୍କ ପୌତ୍ରରୂପେ ୧୮୬୧ ସାଲର ମେ ମାସ ୭ ତାରିଖରେ ଜନ୍ମଗ୍ରହଣ କରିଥିଲେ । ଠାକୁରପରିବାରର ସମସ୍ତେ ତତ୍କାଳୀନ ଆଦିବ୍ରାହ୍ମସମାଜର ଅନ୍ତର୍ଭୁକ୍ତ ଥିଲେ । ଏହି ଆଦିବ୍ରାହ୍ମସମାଜର ସ୍ଥାପୟିତା ଥିଲେ ପ୍ରାତଃସ୍ମରଣୀୟ ରଜା ରାମମୋହନ ରାୟ । ଶ୍ରୀ ଶ୍ରୀ କେଶବଚନ୍ଦ୍ର ସେନ ମହୋଦୟ 'ନବବିଧାନ' ପ୍ରଣୟନ କରି ଆଦି-ବ୍ରାହ୍ମ-ସମାଜର ବିଧିବ୍ୟବସ୍ଥାରେ କେତେକ ପରିବର୍ତ୍ତନର ଅନୁମୋଦନ କରିଥିଲେ। ଆଦିବ୍ରାହ୍ମସମାଜ 'ନବବିଧାନ'ର ପରିବର୍ତ୍ତନଗୁଡ଼ିକ ସମର୍ଥନ ନ କରିବାରୁ ଭେଦଭାବର ସୃଷ୍ଟି ହେଲା ।

ରବୀନ୍ଦ୍ରନାଥ ଅଳ୍ପ ବୟସରେ ବିଦ୍ୟାଶିକ୍ଷା ପାଇଁ ସ୍ଥାନୀୟ ବିଦ୍ୟାଳୟକୁ ପ୍ରେରିତ ହେଲେ; କିନ୍ତୁ ବିଦ୍ୟାଳୟର ବାତାବରଣ ତାଙ୍କର ମନଃପୂତ ହେଲା ନାହିଁ ଏବଂ ଗୃହଶିକ୍ଷକଙ୍କ ଅଧ୍ୟାପନାପଦ୍ଧତି ପ୍ରତି ମଧ୍ୟ ବୀତସ୍ପୃହ ହେଲେ । ସେ ଅଳ୍ପବୟସରେ ସୁଦ୍ଧା ସମୟ ସମୟରେ କବିତାରଚନା କରିବାକୁ ସୁଖ ପାଉଥିଲେ । ଦ୍ୱାଦଶବର୍ଷ ବୟଃକ୍ରମରେ ତାଙ୍କର ଉପନୟନ ହୋଇଥିଲା ଏବଂ ସେହି ସମୟରୁ ସେ ଗାୟତ୍ରୀମନ୍ତ୍ରର ମାହାତ୍ମ୍ୟ ଉପଲବ୍ଧି କରି ତାକୁ ତାହାଙ୍କ ଜୀବନର ବୀଜମନ୍ତ୍ରରୂପେ ଆଦରର ସହିତ ବରଣ କରିଥିଲେ । ତତ୍ପରେ ସେ କଲିକତା ପାଇଁ St. Zaviers ( ସେଣ୍ଟ ଜେଭିୟାର ) କଲେଜରେ ଅଧ୍ୟୟନ କରୁଥିବାବେଳେ କଲେଜର ପଳାତକ ଛାତ୍ରମାନଙ୍କର ନେତା ବା ଅଗ୍ରଣୀ ହୋଇ ପଡ଼ିଥିଲେ । ତାଙ୍କର ଉକ୍ତ ଆଚରଣ ଓ ରୀତିନୀତି ତାଙ୍କର ଅଭିଭାବକମାନଙ୍କର ଶ୍ରୁତିଗୋଚର ହେବାରୁ ତାଙ୍କୁ ଅପାତ୍ର ବିବେଚନାରେ ବିଦ୍ୟାଳୟରୁ ଉଠାଇ ଆଣିଲେ । ଏଥି ପରେ ସପ୍ତଦଶ ବର୍ଷ ବୟଃକ୍ରମରେ ତାଙ୍କର ଦ୍ୱିତୀୟ ଭ୍ରାତା ସତ୍ୟେନ୍ଦ୍ର-

ନାଥଙ୍କ ସଙ୍ଗେ ବିଲାତଯାତ୍ରା କଲେ ଏବଂ ଗୋଟିଏ ଇଂରେଜ ଉଦ୍-
ପରିବାରରେ ରହି ସେଠାକାର ବିଦ୍ୟାଳୟରେ ଅଧ୍ୟୟନ କରିବାକୁ
ଲାଗିଲେ; କିନ୍ତୁ ସେଠାରେ ଦେଢ଼ବର୍ଷ ମାତ୍ର ଅବସ୍ଥାନ କରି କୌଣସି
ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପୂର୍ବରୁ ଗୃହକୁ ଫେରିଲେ ।
୧୮୮୩ ସାଲରେ ଶ୍ରୀମତୀ ମୃଣାଳିନୀ ଦେବୀଙ୍କ ସହ ତାଙ୍କର ବିବାହ
ହୋଇଥିଲା । ତାଙ୍କର ଏହି ଦାମ୍ପତ୍ୟଜୀବନ ବେଶୀଦିନ ସ୍ଥାୟୀ
ହୋଇ ନ ଥିଲା । କାରଣ ୧୯୦୨ ସାଲର ନଭେମ୍ବର ମାସରେ
ତାଙ୍କର ସହଧର୍ମିଣୀ ଇହଲୀଳା ସମ୍ବରଣ କଲେ । ପୁଣି ୧୯୦୩ ସାଲରେ
ତାଙ୍କର କନ୍ୟା ରେଣୁକା ଓ ୧୯୦୪ ସାଲରେ ତାଙ୍କର ନର୍ମସଖା
ଉଦୀୟମାନ କବି ସତୀଶଚନ୍ଦ୍ର ରାୟ ଏବଂ ୧୯୦୫ ସାଲରେ ତାଙ୍କର
ପିତୃଦେବ ଏବଂ ୧୯୦୭ ସାଲରେ ତାଙ୍କର ପ୍ରିୟତମ ପୁତ୍ର ଶମୀନ୍ଦ୍ରନାଥ
ମାନବଲୀଳା ସମ୍ବରଣ କଲେ । ଏହି ପାଞ୍ଚବର୍ଷ ମଧ୍ୟରେ ଉପର୍ଯ୍ୟୁପରି
ଏତେ ଗୁଡ଼ାଏ ବିଚ୍ଛେଦରେ ପଡ଼ି ସେ ଗଭୀର ଶୋକସାଗରରେ ନିମଜ୍ଜିତ
ହୋଇ ରହିଲେ ।

୧୯୧୨ ସାଲରେ ବଙ୍ଗୀୟ ସାହିତ୍ୟପରିଷଦ୍ ତାଙ୍କୁ ତାଙ୍କର କବି-
ପ୍ରତିଭାର ସମ୍ମାନସୂଚକ ଗୋଟିଏ ଅଭିନନ୍ଦନପତ୍ର ଦେଲେ । ଏହି
ସମୟରେ କୌତୂହଳାକ୍ରାନ୍ତ ହୋଇ ସେ ନିଜେ ତାଙ୍କର ଅନେକଗୁଡ଼ିଏ
କବିତାକୁ ଇଂରାଜୀ ଭାଷାରେ ଅନୁବାଦ କଲେ । ୧୯୧୨ ସାଲର
ମେ ମାସରେ ପୁଣି ବିଲାତଯାତ୍ରା କରି (Rothenstein)
ରୋଥେନଷ୍ଟାଇନ୍ ନାମକ ଜଣେ ସମ୍ଭ୍ରାନ୍ତବଂଶୀୟ ଗୁଣଗ୍ରାହୀ ଭଦ୍ରଲୋକଙ୍କ
ସହ ବନ୍ଧୁତ୍ୱପାଶରେ ଆବଦ୍ଧ ହେଲେ । ଭଦ୍ରଲୋକଟି ରବୀନ୍ଦ୍ରନାଥଙ୍କ
କବିତାର ଇଂରାଜୀ ଅନୁବାଦରେ ମୁଗ୍ଧ ହୋଇ ଇଟସ୍ (Yeats)
ନାମକ ଲବ୍ଧପ୍ରତିଷ୍ଠ ନୋବେଲପୁରସ୍କାରପ୍ରାପ୍ତ ଆୟରଲଣ୍ଡର
କବିଙ୍କୁ ସେଗୁଡ଼ିକ ନେଇ ଦେଖାଇଲେ । ଇଟ୍ସ (Yeats)
ରବୀନ୍ଦ୍ରନାଥଙ୍କ କବିପ୍ରତିଭାର ମର୍ଯ୍ୟାଦା ସମ୍ୟକ୍ ଉପଲବ୍ଧି କରି
ସେଗୁଡ଼ିକୁ ଗୀତାଞ୍ଜଳି (The offering of Song)· ନାମ ଦେଇ

ପ୍ରକାଶିତ କଲେ । ୧୯୧୨-୧୩ ସାଲର ଶୀତଋତୁରେ ସେ ଆମେରିକା ଯାଇଥିଲେ ଏବଂ ୧୯୧୩ ସାଲର ହେମନ୍ତକାଳରେ ବିଲାତ ହୋଇ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ । ୧୯୧୩ ସାଲର ନଭେମ୍ବର ମାସରେ ହିଁ ତାଙ୍କର ଗୀତାଞ୍ଜଳି ନୋବେଲ ପୁରସ୍କାର ପାଇଥିବାର ଘୋଷିତ ହେଲା । ସେହି ଡିସେମ୍ବର ମାସରେ କଲିକତା ବିଶ୍ୱବିଦ୍ୟାଳୟ ତାଙ୍କୁ ଡାକ୍ତର ଅଫ୍ ଲିଟେରେଚର୍ (Doctor of Literature) ଉପାଧିରେ ଭୂଷିତ କଲେ ଏବଂ ୧୯୧୫ ସାଲରେ ବ୍ରିଟିଶ ସରକାର ତାଙ୍କୁ ସାର (Sir) ଉପାଧି ଦେଇ ସମ୍ମାନିତ କଲେ; କିନ୍ତୁ ଚାରିବର୍ଷ ପରେ ୧୯୧୯ ସାଲର ଜାଲିଅନାବାଗର ନୃଶଂସ ହତ୍ୟାକାଣ୍ଡର ପ୍ରତିବାଦସ୍ୱରୂପ ସେ ସରକାର-ଦତ୍ତ ଉକ୍ତ ଉପାଧି ପରିହାର କଲେ । ୧୯୧୮ ସାଲରେ ଶାନ୍ତିନିକେତନରେ ତାଙ୍କର ବିଶ୍ୱବିଖ୍ୟାତ ବିଶ୍ୱଭାରତୀ ନାମକ ଆନ୍ତର୍ଜାତିକ ମହାବିଦ୍ୟାଳୟର ମୂଳଭିତ୍ତି ସ୍ଥାପିତ ହୋଇଥିଲା । ୧୯୧୫ ସାଲରେ ଯେତେବେଳେ ମହାତ୍ମାଜୀ ଶାନ୍ତିନିକେତନ ପରିଦର୍ଶନରେ ଆସିଥିଲେ ସେହିଦିନ ଠାରୁ ଦୁଇ ମହାପୁରୁଷଙ୍କ ମଧ୍ୟରେ ପ୍ରଗାଢ଼ବନ୍ଧୁତା ସ୍ଥାପିତ ହୋଇଥିଲା । ୧୯୩୨ ସାଲର ଗୋଲଟେବୁଲ ବୈଠକରୁ ଫେରି ମହାତ୍ମା ଜୀ କାରାବରଣ କରି ଯେତେବେଳେ ୟାର୍ବାଦା (Yarbada) ଜେଲରେ ରହିଲେ ରବୀନ୍ଦ୍ରନାଥ ଅଧୀର ହୋଇ ଉଠିଲେ ଏବଂ ଯେତେବେଳେ ପୁଣି ମହାତ୍ମାଜୀ ଅନଶନବ୍ରତ ଗ୍ରହଣ କଲେ, ରବୀନ୍ଦ୍ରନାଥ ଜେଲରେ ତାଙ୍କ ସଙ୍ଗରେ ବ୍ରତଉଦ୍‌ଯାପନ ଦିନ ପର୍ଯ୍ୟନ୍ତ ଉପସ୍ଥିତ ଥିଲେ । ସେ ମହାତ୍ମାଜୀଙ୍କ ଅବଲମ୍ବିତ ଅନଶନବ୍ରତର ଆଧ୍ୟାତ୍ମିକ ଭିତ୍ତି ତଥା ଉପାଦେୟତା ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରି ଅନ୍ୟାନ୍ୟମାନଙ୍କ ପରି ଉକ୍ତ ଜୀବନମରଣରୂପ ସମସ୍ୟାରୁ ନିବୃତ୍ତ ହେବାକୁ ତାଙ୍କୁ ଅନୁରୋଧ କରି ନ ଥିଲେ । ସେ ବିଶ୍ୱଭାରତୀକୁ ସାଫଲ୍ୟମଣ୍ଡିତ କରିବା ନିମନ୍ତେ ନାନାଦେଶରୁ ବିଭିନ୍ନ ସଭ୍ୟତାର ଆଦର୍ଶମାନ ସଂଗ୍ରହ କରିଥିଲେ । ୧୯୪୧ ସାଲର ଏପ୍ରିଲ ମାସରେ ତାଙ୍କର ଅଶୀତିତମ ବର୍ଷରେ ସମଗ୍ର ପୃଥିବୀ-ବ୍ୟାପୀ ମହାମହୋତ୍ସବମାନ ଅନୁଷ୍ଠିତ ହୋଇଥିଲା, ମାତ୍ର ଅଳ୍ପଦିନ ପରେ ସେ ଅନନ୍ତ ଗମ୍ଭୀରବିଷାଦରେ ପରିଣତ ହେଲା । କାରଣ ଅଗଷ୍ଟ ମାସର ୭ତାରିଖରେ ତାଙ୍କ ବାସଭବନରୁ ଅମରକବି ମହାପ୍ରସ୍ଥାନ ପଥିକ ହେଲେ ।

ରବୀନ୍ଦ୍ରଙ୍କ ନାମ ସ୍ମରଣ କଲାମାତ୍ରେ, ନୋବେଲ ପୁରସ୍କାରକଥା ସ୍ୱତଃ ମନରେ ଉଦିତ ହୁଏ । ୧୯୧୩ ସାଲରେ ରବୀନ୍ଦ୍ରନାଥ ତାଙ୍କ ଗୀତାଞ୍ଜଳି ନାମକ ପୁସ୍ତକର ଗୋଟିଏ ଇଂରାଜି ଅନୁବାଦ ପ୍ରକାଶ କରି ସେ ବର୍ଷର ନୋବେଲ ପୁରସ୍କାର ପାଇଥିଲେ । ଉକ୍ତ ଅନୁବାଦଟି ପୁରସ୍କାର-ବିତରଣୀ ସଭାର ସଦସ୍ୟମାନଙ୍କ ବିବେଚନାରେ ସେହି ସମୟର ସର୍ବଶ୍ରେଷ୍ଠ କାବ୍ୟଗ୍ରନ୍ଥ ବୋଲି ସ୍ୱୀକୃତ ହୋଇଥିଲା । ଯେଉଁ ବଙ୍ଗଭାଷାବିତ୍ କାବ୍ୟରସିକମାନେ ମୂଳଗୀତାଞ୍ଜଳି ପାଠ କରିଛନ୍ତି, ସେମାନେ ନିଶ୍ଚୟ ମୁକ୍ତ-କଣ୍ଠରେ ସ୍ୱୀକାର କରିବେ ଯେ ମୂଳଗୀତାଞ୍ଜଳି ଓ ତାହାର ଇଂରାଜି ଅନୁବାଦ ମଧ୍ୟରେ ବ୍ୟବଧାନ ଖୁବ୍ ବେଶୀ । ତାହାର କାରଣ ମଧ୍ୟ ଅଛି । ଏପରି ଅନେକ କବିତା ଅଛି ଯାହାର ଭାବମାଧୁର୍ଯ୍ୟ ଶବ୍ଦବିନ୍ୟାସର କଳାସୌଷ୍ଠବ କିମ୍ବା ବର୍ଣ୍ଣଯୋଜନାର ଗୁରୁତ୍ୱ ଉପରେ ସମ୍ୟକ୍ ନିର୍ଭର କରେ ନାହିଁ । ଏପରି ଭାବପ୍ରଧାନ କବିତାକୁ ଅନ୍ୟ ଭାଷାରେ ଅନୁବାଦ କଲେ ମୂଳକବିତାର ଭାବସଂରକ୍ଷଣ ସିଦ୍ଧହସ୍ତ ନିପୁଣ ଅନୁବାଦକପକ୍ଷରେ ମଧ୍ୟ ଦୁଃସାଧ୍ୟ; କିନ୍ତୁ ଯେଉଁ କବିତାର ଭାବଗାମ୍ଭୀର୍ଯ୍ୟ ସଙ୍ଗେ ସଙ୍ଗେ ଭାଷା-ସୌନ୍ଦର୍ଯ୍ୟ ଓତପ୍ରୋତଭାବରେ ଏପରି ଜଡ଼ିତ ଯେ ଏକକୁ ଆରେକଠାରୁ ପୃଥକ୍ କରିବା କଠିନ, ସେପରି କବିତାକୁ ଅତି ବିସଦୃଶ ଅନ୍ୟ ଏକ ଭାଷାରେ ଅନୁବାଦ କଲେ ତାହାର ମୌଳିକ ସୌନ୍ଦର୍ଯ୍ୟ ଅକ୍ଷୁଣ୍ଣ ରଖିବା ଏକାବେଳକେ ଅସମ୍ଭବ । ରବୀନ୍ଦ୍ରନାଥଙ୍କ ଗୀତାଞ୍ଜଳି ଏହି ଶେଷୋକ୍ତ ଶ୍ରେଣୀର କାବ୍ୟଗ୍ରନ୍ଥ ଅଟେ । ଏଥିରେ ଶବ୍ଦବିନ୍ୟାସର ଯେ ଶିଳ୍ପଚାତୁରୀ ପ୍ରଦର୍ଶିତ ହୋଇଅଛି, ତାହା କବିଙ୍କର ଅଲୌକିକ ଅସାମାନ୍ୟ ପ୍ରତିଭାର ଗୋଟିଏ ଶୋଭନ ନିଦର୍ଶନ ଅଟେ । ମାତ୍ର ତାହାର ଇଂରାଜି ଅନୁବାଦଟି ସେହି ବର୍ଣ୍ଣବିନ୍ୟାସର ସୌନ୍ଦର୍ଯ୍ୟସମ୍ପଦରୁ ବଞ୍ଚିତ ହୋଇ ସୁଦ୍ଧା ଅନ୍ୟାନ୍ୟ କଳା-ନୈପୁଣ୍ୟହେତୁ ପୃଥିବୀର ସର୍ବଶ୍ରେଷ୍ଠ କବିତାପୁସ୍ତକରୂପେ ସ୍ୱୀକୃତ ହୋଇଥିଲା ।

କୌଣସି କୌଣସି ସମାଲୋଚକଙ୍କ ମତରେ ଗୀତାଞ୍ଜଳି ରବୀନ୍ଦ୍ରନାଥଙ୍କ ସର୍ବଶ୍ରେଷ୍ଠ କାବ୍ୟଗ୍ରନ୍ଥ ନୁହେ । ନିର୍ଝରର ସ୍ୱପ୍ନଭଙ୍ଗ

ପ୍ରକୃତ ଭାବରେ ଯେଉଁ କାବ୍ୟକଳାର ନବୋନ୍ମେଷମାତ୍ର ସୂଚିତ ହୋଇଥିଲା, ତାହା ତାଙ୍କ ଗ୍ରନ୍ଥଗୁଡ଼ିକରେ ପୂର୍ଣ୍ଣ ବିକାଶପ୍ରାପ୍ତ ହୋଇଥିଲେହେଁ ବଙ୍ଗଳା ପ୍ରକୃତ ପଦାବଳୀ କବିତାମାନଙ୍କରେ ସେହି ବିକାଶ ସରସ ଓ ସମୁଜ୍ଜଳତର ହୋଇଥିଲା ବୋଲି କେହି କେହି କହନ୍ତି । ବିଶେଷତଃ ବଙ୍ଗଭାଷାବିତ୍ କାବ୍ୟାମୋଦୀମାନେ ଏହା ମୁକ୍ତକଣ୍ଠରେ ସ୍ୱୀକାର କରିବେ । କେବଳ ଅନୁବାଦରେ ଯେଉଁ କବିତା ବିଶ୍ୱପ୍ରତିଯୋଗିତାରେ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲା, ତାହାର ମୌଳିକ ସୌନ୍ଦର୍ଯ୍ୟର ଉତ୍କର୍ଷ ଯେ କେତେ ବେଶୀ, ତାହା କେବଳ ବାହୁଲ୍ୟ ମାତ୍ର । ତେଣୁ ଏହା ନିଃସଙ୍କୋଚରେ କୁହାଯାଇ ପାରେ ଯେ ନୋବେଲ ପୁରସ୍କାରପ୍ରାପ୍ତି ରବୀନ୍ଦ୍ର-ପ୍ରତିଭାର ପରିମାପକ ନୁହେ । ଯେଉଁ ଯେଉଁ ଉତ୍କର୍ଷବଳରେ ସେ ଓ ଅନ୍ୟାନ୍ୟମାନେ ସେ ପୁରସ୍କାର ପାଇଥିଲେ, ତାଙ୍କର ତାହାଠାରୁ ବହୁ ଗୁଣରେ ବେଶୀ ଉଚ୍ଚଶ୍ରେଣୀର ପ୍ରତିଭା ଥିଲା । ଏହାହିଁ ମୋର ବକ୍ତବ୍ୟ ।

ମାତ୍ର ଏହା ମଧ୍ୟ ସ୍ୱୀକାର କରିବା ଉଚିତ ଯେ ସେ ନୋବେଲ ପୁରସ୍କାର ପାଇ ନ ଥିଲେ, ତାଙ୍କର କବିଯଶଃ ଏତେ ଶୀଘ୍ର ସମଗ୍ର ପୃଥିବୀରେ ବ୍ୟାପିଯାଇ ନ ଥାଆନ୍ତା—କାରଣ କେତେଜଣ ପାଶ୍ଚାତ୍ୟଦେଶବାସୀ ବଙ୍ଗଳାଭାଷା ପଢ଼ନ୍ତି ବା ବୁଝନ୍ତି ? କେବଳ ଭାଷାବୋଧହିଁ କାବ୍ୟ-ରସାସ୍ୱାଦ ପାଇଁ ଯଥେଷ୍ଟ ନୁହେଁ । ବିଶେଷତଃ ଏହି ରାଜନୀତିପ୍ରଧାନ ଯୁଗରେ —ଏହି ସର୍ବଗ୍ରାସୀ ଉଦରଚିନ୍ତାର ଯୁଗରେ—ଏହି ଜଡ଼ବିଜ୍ଞାନସର୍ବସ୍ୱ ଯୁଗରେ କେତେଜଣ ବା କାବ୍ୟକଳାର ଆଦର କରନ୍ତି ? ସୁତରାଂ ନୋବେଲ ପୁରସ୍କାରହିଁ ତାଙ୍କର ବିଶ୍ୱବ୍ୟାପୀ ବିପୁଳକୀର୍ତ୍ତିସୌଧର ମୂଳଭିତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତାଙ୍କର କବିତା ବଙ୍ଗସାହିତ୍ୟରେ ଗୋଟିଏ ନୂତନ ଯୁଗର ଅବତାରଣା କରିଅଛି । ଏହି ଯୁଗର ସାହିତ୍ୟକୁ ଲୋକେ ରବୀନ୍ଦ୍ର-ସାହିତ୍ୟ ନାମ ଦେଲେଣି । ଏହି ସାହିତ୍ୟ ଯୁଗପ୍ରବର୍ତ୍ତକରୂପେ ତାଙ୍କର ପଦାଙ୍କ ଅନୁସରଣ କରୁଅଛି । ସେ ଏହି ନବଯୁଗର ସାହିତ୍ୟର ସର୍ବପ୍ରଧାନ ପୁରୋଧାରୂପେ ତାହାର ଗତିକୁ ନିୟନ୍ତ୍ରିତ କରୁଅଛନ୍ତି ।

ପାଶ୍ଚାତ୍ୟ ଚିନ୍ତାଧାରାଙ୍କର ପ୍ରଭାବହିଁ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ଭାରତର ଆଧୁନିକ ସାହିତ୍ୟକୁ ଅନୁପ୍ରାଣିତ କରୁଅଛି । ଏକ ନବଯୁଗର ସ୍ରଷ୍ଟା ହୋଇ ସୁଦ୍ଧା ସେ ପ୍ରାଚୀନ ପ୍ରତି ଏକାବେଳକେ ଉଦାସୀନ ନ ଥିଲେ । ଅପରନ୍ତୁ ସେ ନବୀନତାର ପ୍ରବର୍ତ୍ତନରେ ପ୍ରାଚୀନକୁ ମଧ୍ୟ ଯଥୋଚିତ ସମାଦର କରିଅଛନ୍ତି । ତେଣୁ ତାଙ୍କର ସାହିତ୍ୟସାଧନା ନୂତନ ଓ ପୁରାତନର ଏକ ସୁନ୍ଦର ସମନ୍ୱୟ—ନବୀନ ଓ ପ୍ରାଚୀନର ମଧୁରମିଳନ ।

ବଙ୍ଗଭାଷାର ପରମ୍ପରାଗତ ବୈଧୀଶୈଳୀର (Classical style) ବାଧ୍ୟବାଧକତାମୂଳକ ସର୍ବବିଧ ଶୃଙ୍ଖଳାର ମର୍ଯ୍ୟାଦା ଲଙ୍ଘନ ନ କରି ରାଗାନୁଗା ଶୈଳୀର (Romantic style) ଲକ୍ଷଣାବ୍ୟଞ୍ଜନାତ୍ମିକା ଭାବପ୍ରବଣତାର ସଙ୍ଗେ ସଙ୍ଗେ ରହସ୍ୟବାଦ ବା ଅତୀନ୍ଦ୍ରିୟବାଦର କଳ୍ପନାବିଳାସକୁ ସର୍ବଜନପ୍ରିୟ ସରଳ ଓ ପ୍ରାଞ୍ଜଳ ଭାଷାରେ ପ୍ରକାଶ କରି ସେ ନିଖିଳ ବିଶ୍ୱସାହିତ୍ୟରେ ବରେଣ୍ୟ-ପଦବୀରେ ପ୍ରତିଷ୍ଠିତ ହୋଇଅଛନ୍ତି । ତାଙ୍କର ରହସ୍ୟବାଦ ବା ଅତୀନ୍ଦ୍ରିୟବାଦ ( Mysticism )ର ବୈଶିଷ୍ଟ୍ୟ ଭାରତର ଉପନିଷଦ୍ ତଥା ବୈଷ୍ଣବକବିତାର ଭୂମିକା ଉପରେ ପ୍ରତିଷ୍ଠିତ ହେଲେହେଁ ଏହା ମୌଳିକତା ତଥା ବିଚିତ୍ରତାରେ ଗୋଟିଏ ଅଭିନବ ଉପାଦେୟ ବସ୍ତୁରୂପେ ସାହିତ୍ୟଜଗତରେ ଚିରକାଳ ଆଦର ପାଇବ ।

ସୂକ୍ଷ୍ମ ଭାବରାଜ୍ୟ ଅସୀମ ଓ ଅନନ୍ତ ଏବଂ ନିଗୂଢ଼ ରହସ୍ୟମୟ— ଭାଷା ସସୀମ, ସାନ୍ତ ଓ ସ୍ଥୂଳ ; ସୁତରାଂ ଭାଷାର ସାହାଯ୍ୟରେ ଭାବର ପୂର୍ଣ୍ଣପ୍ରକାଶର ପ୍ରଚେଷ୍ଟା ଲଳିତକଳାର ମୁଖ୍ୟ ଉଦ୍ଦେଶ୍ୟ । ଏହି ଅସାଧ୍ୟ ସାଧନହିଁ ରହସ୍ୟବାଦ ବା ଅତୀନ୍ଦ୍ରିୟବାଦ ନାମରେ ଅଭି-ହିତ । ଲଳିତକଳା ଇନ୍ଦ୍ରିୟଗ୍ରାହ୍ୟ ପ୍ରତ୍ୟକ୍ଷ ଦ୍ୱାରା ଅପ୍ରତ୍ୟକ୍ଷ ଇନ୍ଦ୍ରିୟାତୀତ ଚିନ୍ମୟରାଜ୍ୟର ସମ୍ବାଦ ଦେବାର ଚେଷ୍ଟା କରେ । ଭାଷା ଭାବପ୍ରକାଶର ସମ୍ୟକ ଉପଯୋଗୀ ନ ହେଲେହେଁ ସଙ୍କେତ ବା ଇଙ୍ଗିତଦ୍ୱାରା ଅନନ୍ତର ବାର୍ତ୍ତା ବହନ କରେ ଓ ଅସୀମ ଅନନ୍ତ ଚିନ୍ମୟ ରାଜ୍ୟର

ମନୋଜ୍ଞ ଚିତ୍ର ପର୍ଯ୍ୟନ୍ତ ଅଙ୍କନ କରିବାର ପ୍ରୟାସ କରେ । ଏହାହିଁ ଭାଷାର ବ୍ୟଞ୍ଜନାବୃତ୍ତି (Suggestiveness) । ଏହି ଇଙ୍ଗିତ ବା ସଙ୍କେତକୁ ସୃଷ୍ଟି କରିବାଲାଗି କବିଲେଖନୀ ଇନ୍ଦ୍ରଜାଲ ସୃଷ୍ଟି କରେ; ତାକ୍ୟକଳାହିଁ ଏ କୁହୁକବିଦ୍ୟା ଜାଣେ ; ସୁତରାଂ ସେ ସ୍ଥୂଳ ଓ ସସୀମ ଭାଷାର ସାହାଯ୍ୟରେହିଁ ହିବରାଜ୍ୟରେ ସ୍ୱପ୍ନର ମାୟାପୁରୀ ରଚନା କରେ । ରବୀନ୍ଦ୍ରନାଥ ଏହିରୂପ କବିତା ରଚନାରେ ସିଦ୍ଧହସ୍ତ ଥିଲେ ।

ତାଙ୍କ କବିତାର ଗୋଟିଏ ବୈଶିଷ୍ଟ୍ୟ ଏଠାରେ ପ୍ରଣିଧାନ ଯୋଗ୍ୟ । ତାଙ୍କର କବିତାବଳୀ ନିଗୂଢ଼ ଭାବାଶ୍ରୟରେ ରଚିତ ହୋଇଥିଲେହେଁ ତାହା ଅତି ସ୍ଥୂଳବୁଦ୍ଧି ପାଠକର ମଧ୍ୟ ହୃଦୟକୁ ଆକର୍ଷଣ କରେ । ତାଙ୍କର 'ଶିଶୁର ଜନ୍ମକଥା' ପ୍ରଭୃତିରେ ସୃଷ୍ଟିର ନିଗୂଢ଼ ରହସ୍ୟକଥା ନିହିତ ଥିଲେହେଁ ଅତି ସୁକୁମାରମତି ବାଳକ-ବାଳିକାମାନେ ମଧ୍ୟ ସେଗୁଡ଼ିକ ମହା ଆନନ୍ଦରେ ଉପଭୋଗ କରନ୍ତି । ତାହାର ଅଭ୍ୟନ୍ତରୀଣ ତଥ୍ୟାନୁସନ୍ଧାନରେ ଯେଉଁ ସରଳପ୍ରାଣ ପାଠକର ପ୍ରବେଶାଧିକାର ଜନ୍ମି ନାହିଁ ସେ ମଧ୍ୟ ତାଙ୍କର ସଙ୍ଗୀତମୟୀ ଭାଷା ଓ ମଧୁମୟୀ ରଚନାଶୈଳୀରେ ମୁଗ୍ଧ ହୋଇଯାଏ । କବି ହିସାବରେ ରବୀନ୍ଦ୍ରନାଥଙ୍କର କଳାକୃତିର ଏହାହିଁ ଅନନ୍ୟସାଧାରଣ ଉତ୍କର୍ଷର ସୂଚନା ଦିଏ । ବିଶେଷତଃ ତାଙ୍କର ଅଧିକାଂଶ କବିତାହିଁ ସଙ୍ଗୀତରୂପେ ଲିଖିତ ହୋଇଥିବାରୁ ସଙ୍ଗୀତର ସୁଶ୍ରାବ୍ୟତା ସେଗୁଡ଼ିକୁ ଅତି ସୁଖପାଠ୍ୟ ଓ ଶ୍ରୁତିମଧୁର କରିଅଛି ।

ଉର୍ବଶୀ ଓ ତପୋଭଙ୍ଗ ପ୍ରଭୃତି କେତୋଟି କବିତା ବ୍ୟତୀତ ତାଙ୍କ ରଚିତ ଅନ୍ୟାନ୍ୟ କବିତାଗୁଡ଼ିକରେ ଦୁର୍ବୋଧ ଶବ୍ଦର ପ୍ରୟୋଗ ପ୍ରାୟ ନାହିଁ କହିଲେ ଚଳେ । ଯେଉଁ ଯେଉଁ ଶବ୍ଦ ଯେନ ସାଧାରଣ ବଙ୍ଗଭାଷୀ ତାହାର ଭାବ ପ୍ରକାଶ କରେ, ସେ କେବଳ ସେହି ସେହି ଗ୍ରାମସୁଲଭ ଶବ୍ଦକୁସୁମମାନଙ୍କରେହିଁ ବୈଜୟନ୍ତୀ ମାଳା ଗ୍ରଥିତ କରି ବାଗ୍‌ଦେବୀଙ୍କ କଣ୍ଠ ମଣ୍ଡନ କରୁଥିଲେ । ଧନ୍ୟ ସେ

ମାଳୀ—ଯେ କି କେବଳ ସହଜଲଭ୍ୟ ମଲ୍ଲୀ, ଦଉଣା, ବାସଙ୍ଗ, ପ୍ରଭୃତି ପଲ୍ଲୀଫୁଲର ପୁଷ୍ପମାନଙ୍କରେ ମାଳା ଗୁନ୍ଥି କେବଳ ଗୁନ୍ଥିବାର ଅଲୌକିକ ଭଙ୍ଗୀ ପ୍ରକାଶଦ୍ୱାରା ସ୍ୱର୍ଗର ମନ୍ଦାରମାଳାର ଅନନ୍ତଗୌରବ ଚାପିରୁ ମ୍ଳାନ କରିଦିଏ। ଭାଷାର ସାରଲ୍ୟ ସଙ୍ଗେ ସଙ୍ଗେ ସୌନ୍ଦର୍ଯ୍ୟର ପୂର୍ଣ୍ଣ ସମାବେଶ ଓ ସାମଞ୍ଜସ୍ୟରେ କବିତା କିପରି ମନୋହର ଅପରୂପ ରୂପ ଧାରଣ କରେ, ରବୀନ୍ଦ୍ରନାଥଙ୍କ କବିତାରେ ତାହାର ଶୋଭନ ନିଦର୍ଶନ ମିଳେ। ବିଶାଳ ବିଶ୍ୱସାହିତ୍ୟରେ ଏହାର ପଟାନ୍ତର ଖୋଜିବା ବିଡ଼ମ୍ବନା ମାତ୍ର, ଏଥିରେ ସନ୍ଦେହ ନାହିଁ।

ସର୍ବପ୍ରଥମେ କବିଙ୍କର ବର୍ଣ୍ଣନାତ୍ମକ କାବ୍ୟଗ୍ରନ୍ଥର (Didactic Poetry) ରଚନାଶୈଳୀ ପ୍ରଣିଧାନଯୋଗ୍ୟ। ଶୁଦ୍ଧ ବର୍ଣ୍ଣନାତ୍ମକ କାବ୍ୟ ଉଚ୍ଚକୋଟୀର କାବ୍ୟ ନୋହିଲେହେଁ ସେଥିରୁ ମଧ୍ୟ କବିଙ୍କ କବିପ୍ରତିଭାର ଓ କଳାକୌଶଳର ବିଶେଷ ପରିଚୟ ମିଳେ ସଚରାଚର ଦେଖାଯାଏ, ବର୍ଣ୍ଣନାତ୍ମକ କାବ୍ୟରେ କବି ନିଜର ଲେଖନୀକୁ ସଂଯତ କରି ନ ପାରିବାରୁ ବର୍ଣ୍ଣନାର ପ୍ରାଥମିକ ଉଦ୍ଦେଶ୍ୟ ଓ ମୂଳତାତ୍ପର୍ଯ୍ୟକୁ ଭୁଲି କବି ନିରଙ୍କୁଶ କଳ୍ପନାବିଳାସରେ ମାତିଯାନ୍ତି। ମାତ୍ର ପ୍ରଗାଢ଼ ଆତ୍ମସଂଯମହିଁ କାବ୍ୟକଳାର ଏକମାତ୍ର ଅବଲମ୍ବନୀୟ। ବର୍ଣ୍ଣନୀୟ ବସ୍ତୁଟିର ଅନ୍ତର୍ଗୂଢ଼ ସତ୍ୟ ଶିବ ସୁନ୍ଦରଙ୍କ ପ୍ରଚ୍ଛନ୍ନମୂର୍ତ୍ତିକୁ ଯେଉଁ ସ୍ୱଳ୍ପଭାଷୀ କବି ଅଳ୍ପକଥାରେହିଁ ପୂର୍ଣ୍ଣ ପ୍ରକଟ କରି ପାରେ, ସେ ତ ପ୍ରକୃତ କବି। ରବୀନ୍ଦ୍ରନାଥ ଏ ଦିଗରେ ଭାରତବର୍ଷର ସାହିତ୍ୟକ୍ଷେତ୍ରରେ ଅପ୍ରତିଦ୍ୱନ୍ଦ୍ୱୀ। ମହାକବି କାଳିଦାସଙ୍କ ପରେ ଏପରି ବର୍ଣ୍ଣନାଚାତୁରୀ ଅନ୍ୟତ୍ର ଦେଖାଯାଇ ନାହିଁ। ଗୋଟାଏ ବସ୍ତୁ ବା ଘଟଣାର ରହସ୍ୟ ଉଦ୍‌ଘାଟନ କରିବାକୁ ଯାଇ ଅବାନ୍ତର ନାନାକଥା ବାଢ଼ିବା ଭଳି ସୁରୁଚିବିଗର୍ହିତ ଓ କଳାସୌଷ୍ଠବବାଧକ ବାଚାଳତା ତାଙ୍କର ନ ଥିଲା। ଏହା କେବଳ ଚକ୍ଷୁରିଗ୍ରାହ୍ୟ କବିମାନଙ୍କର ଅପଟ-ହସ୍ତର ଅପରିପକ୍ୱ ଲେଖନୀଗୁଳନରୁ ଜନ୍ମିତ ହୁଏ ବିନା। ଗୋଟିଏ ଦୃଶ୍ୟ ଦେଖି, ତାହାର ସାରାଂଶ ଓ ଅସାରାଂଶ, ହେୟାଂଶ ଓ

ଶ୍ରେଣ୍ୟାଂଶ ମଧ୍ୟରେ ଯେଉଁ ମାତ୍ରମୂଳ ପାର୍ଥକ୍ୟ ଅଛି ତାହାର ସମ୍ୟକ୍ ବିଗ୍ରହ ନ କଲେ, ଅଙ୍କିତ ଚିତ୍ରର ସୌନ୍ଦର୍ଯ୍ୟହାନି ଅବଶ୍ୟମ୍ଭାବୀ । କେବଳ ସାରମର୍ମଟି ଉଦ୍‌ଘାଟନ କରି ଜାଣିବା ପ୍ରକୃତ ପ୍ରତିଭାସାପେକ୍ଷ । ନାନା ଅବାନ୍ତର କଥା ପରିବେଶନ କରି ଜଟିଳତା ସୃଷ୍ଟି କରିବାହିଁ ଅକବିର କାର୍ଯ୍ୟ । ଦୃଶ୍ୟଟିର ସୌନ୍ଦର୍ଯ୍ୟ ହୃଦୟଙ୍ଗମ କରି ସ୍ୱଳ୍ପ କଥାରେ ସେହି ସୌନ୍ଦର୍ଯ୍ୟଟି ଅପରକୁ ଉପଭୋଗ କରାଇବାହିଁ ବର୍ଣ୍ଣନାଶକ୍ତିରୀ-ସାପେକ୍ଷ । ରବୀନ୍ଦ୍ରନାଥ ଅତି ଅଳ୍ପକଥାରେହିଁ ତାହା କରି ପାରୁଥିଲେ । ସେ ଜାଣିଥିଲେ—ପ୍ରଗଲ୍‌ଭ ବାଗ୍‌ବହୁଳତା କାବ୍ୟକଳାର ପରମଶତ୍ରୁ ।

## ରବୀନ୍ଦ୍ର କବିତାର ଶୈଳୀ ଓ ଛନ୍ଦ

ସଂସ୍କୃତ କବିତାରେ ପ୍ରତ୍ୟେକ ଯୁକ୍ତାକ୍ଷରକୁ ଦୁଇଗୋଟି ବର୍ଣ୍ଣର ଏବଂ ପ୍ରତ୍ୟେକ ଦୀର୍ଘସ୍ୱରକୁ ଦୁଇଗୋଟି ହ୍ରସ୍ୱସ୍ୱରର ସମାନ ବୋଲି ଧରି ଛନ୍ଦ ରଚନା କରାଯାଏ । ହିନ୍ଦୀ କବିତାରେ ମଧ୍ୟ ସଂସ୍କୃତର ଛନ୍ଦୋନିୟମମାନ ପ୍ରଚଳିତ ହୋଇ ଆସୁଅଛି । କିନ୍ତୁ ବଙ୍ଗଳା ଓ ଓଡ଼ିଆ କବିତାରେ ଆବହମାନକାଳରୁ ଏହାର ବ୍ୟତିକ୍ରମ ଦେଖାଯାଏ । ଏଥିରେ ଯୁକ୍ତ ହେଉ ବା ଅଯୁକ୍ତ ହେଉ, ତାହା ଗୋଟିଏ ବର୍ଣ୍ଣର ସମାନ ବୋଲି ଧରାଯାଏ ଏବଂ ହ୍ରସ୍ୱସ୍ୱର ଓ ଦୀର୍ଘସ୍ୱର ମଧ୍ୟରେ କୌଣସି ଉଚ୍ଚାରଣଗତ ପାର୍ଥକ୍ୟ ନ ଥାଏ । ମାତ୍ର ରବୀନ୍ଦ୍ରନାଥ ତାଙ୍କ କବିତାଗୁଡ଼ିକରେ ସଂସ୍କୃତପଦ୍ଧତି ଅନୁସରଣ କରି ଯୁକ୍ତାକ୍ଷରକୁ ଦୁଇଗୋଟି ବର୍ଣ୍ଣ ସଙ୍ଗେ ସମାନ ବୋଲି ଧରିଅଛନ୍ତି, ମାତ୍ର ଦୀର୍ଘସ୍ୱରକୁ ହ୍ରସ୍ୱସ୍ୱରଠାରୁ ପୃଥକ୍ ବିବେଚନା କରି ନାହାନ୍ତି । ତାହାର କାରଣ ବଙ୍ଗଭାଷାର ପ୍ରଚଳିତ ରୀତି ଅନୁଯାୟୀ, ଅନ୍ତତଃ ଚଳିତ କଥୋପକଥନଭାଷାରେ, ହ୍ରସ୍ୱସ୍ୱର ଓ ଦୀର୍ଘସ୍ୱର ମଧ୍ୟରେ କୌଣସି ପାର୍ଥକ୍ୟ ଲକ୍ଷିତ ହୁଏ ନାହିଁ । ରବୀନ୍ଦ୍ରନାଥ ଏହି ନବଶୈଳୀର ପ୍ରବର୍ତ୍ତନ କରି ନବୀନପନ୍ଥୀ କବିମାନଙ୍କର ବିଶେଷ ଆଦରଣୀୟ ଏବଂ ଅନୁକରଣୀୟ ହୋଇଅଛନ୍ତି ଏବଂ

ତାଙ୍କର କାବ୍ୟକୃତିକୁ ବିଶେଷ ସୁନ୍ଦର ଓ ମଧୁର କରି ପାରି ଅଛନ୍ତି। ତାଙ୍କର ଆଦର୍ଶରେହିଁ ଉତ୍କଳର ନବୀନପନ୍ଥୀ କବିମାନେ ତାଙ୍କର ସେହି ରଚନାପଦ୍ଧତିକୁ ଅମଦାନୀ କରିବାରେ ବ୍ରତୀ ହୋଇଛନ୍ତି। ନୂତନ ଉଦ୍ୟମରେ ପୂର୍ଣ୍ଣ ସଫଳତାଲାଭ ପ୍ରଭୂତ ପ୍ରତିଭାସାପେକ୍ଷ । ରବୀନ୍ଦ୍ରନାଥ ଏ ଦିଗରେ ଓ ମଧୁସୂଦନ ଅମିତ୍ରାକ୍ଷରର ପ୍ରବର୍ତ୍ତନରେ ସେହି ପ୍ରତିଭାର ପୂର୍ଣ୍ଣ ପରିଚୟ ଦେଇଅଛନ୍ତି। ପୁଣି ପ୍ରଗତିପନ୍ଥୀ କବିମାନଙ୍କର ଗଦ୍ୟକବିତା (Prose poetry) ର ଶୈଳୀ ଅଦ୍ଭୁତ ନୂତନ ଏବଂ ଅଦ୍ଭୁତ। କେହି କେହି ସେଥିରୁ ମଧ ବୃଦ୍ଧି ଦେଲେଣି ।

ରବୀନ୍ଦ୍ରନାଥ ବଙ୍ଗସାହିତ୍ୟରେ ଅବହମାନକାଳରୁ ପ୍ରଚଳିତ ଛନ୍ଦମାନଙ୍କରେ କବିତା ଲେଖି ନ ଥିଲେ। ଦୀର୍ଘ ତ୍ରିପଦୀ, ଲଘୁ ତ୍ରିପଦୀ ଓ ବଙ୍ଗଳାର ପ୍ରକୃତ ଛନ୍ଦରେ ତାଙ୍କର ପୂର୍ବବର୍ତ୍ତୀ କବିମାନେ କବିତା ରଚନା କରିଥିଲେ। ରବୀନ୍ଦ୍ରନାଥ ଭାରତୀୟ ତଥା ବୈଦେଶିକ ସାହିତ୍ୟମାନ ଅନୁଶୀଳନ କରି ଅଭିନବ ଛନ୍ଦ ଓ ବୃତ୍ତମାନ ଆବିଷ୍କାର କରିଥିଲେ। ପୁଣି ଯେଉଁ ସବୁ ଛନ୍ଦ ବାଗ୍‌ଦେବୀଙ୍କ ସଙ୍ଗୀତଶାଳାରୁ ନିର୍ବାସିତ ହୋଇ ବଙ୍ଗର ପୁରସ୍ତ୍ରୀମାନଙ୍କରେ ଅପାଂକ୍ତେୟରୂପେ କେବଳ ପ୍ରାଚୀନମାନଙ୍କର ଡଗଡମାଳୀ (ଛଡ଼ାଗାନ)ରେ ଆଶ୍ରୟଗ୍ରହଣ କରିଥିଲା, କବି ସେହି ଛନ୍ଦୋ-ହରିଜନମାନଙ୍କର ପୁନଃସଂସ୍କାର ବିଧାନପୂର୍ବକ ବାଣୀପୀଠରେ ମହାପବିତ୍ର ଆସନରେ ବସାଇ ସେମାନଙ୍କର ମାହାତ୍ମ୍ୟ ବୃଦ୍ଧି କରିଥିଲେ। ଏତଦ୍‌ବ୍ୟତୀତ ସେ ସଙ୍ଗୀତର ନାନା ତାନମାନ ଅଧ୍ୟବସାୟ ସହିତ ଆଲୋଚନା କରି କବିତାର ଛନ୍ଦକୁ ସଙ୍ଗୀତର ସୁରରେ ତାଳି, କବିତାକୁ ସଙ୍ଗୀତମୟୀ ଓ ସଙ୍ଗୀତକୁ କାବ୍ୟାତ୍ମକ କରି ଦେଇଥିଲେ । କାବ୍ୟକଳାର ଓ ସଙ୍ଗୀତକଳାର ଏରୂପ ସଙ୍କରୀକରଣ ଭାରତର ବୈଷ୍ଣବକବିତାର ଗୋଟିଏ ପ୍ରଣିଧାନଯୋଗ୍ୟ ବୈଶିଷ୍ଟ୍ୟ ।

କେଣ୍ଟ ରବୀନ୍ଦ୍ରନାଥଙ୍କ କବିତାରେ ପ୍ରାଚୀନ ବୈଷ୍ଣବକବିତାର ଛାୟାସମ୍ପାତର କଥା କେହି କେହି କହନ୍ତି । ସେ ଯେ ଦିନେ ବୈଷ୍ଣବ-କବିତାର ମୋହରେ ପଡ଼ିଥିଲେ, ତାହାଙ୍କ ପ୍ରଣୀତ ଭାନୁସିଂହ ପଦାବଳୀରୁ ତାହା ସ୍ପଷ୍ଟ ପ୍ରମାଣିତ ହୁଏ । ବୈଷ୍ଣବକବିତାର ଶୈଳୀ ଅନୁସରଣ କରି ବଙ୍ଗଳାହିନ୍ଦୀମିଶ୍ରିତ ଏକ·ଛନ୍ଦକର୍ଣ୍ଣରଧାୟନ ଭାଷାରେ "ଭାନୁସିଂହ" ନାମ ଗ୍ରହଣ କରି ସେ ସେଗୁଡ଼ିକ ଲେଖିଥିଲେ । କିନ୍ତୁ ତାଙ୍କର କବିତା ଧର୍ମ-ସମ୍ବନ୍ଧୀୟ ସାମ୍ପ୍ରଦାୟିକ ଲେଖା ନୁହେଁ—ଏହା ସାର୍ବଜନୀନ ଉଦାର-ଭାବାଶ୍ରିତ କବିତା । ଏଥିରେ ସାମ୍ପ୍ରଦାୟିକ ସଙ୍କୀର୍ଣ୍ଣତା ନାହିଁ ; ସେଗୁଡ଼ିକ ଏକ ଉଦାର-ଭାବଭୂମିକାରେହିଁ ସୁପ୍ରତିଷ୍ଠିତ ।

ସାଧାରଣ ଲୋକେ ଭାବପ୍ରକାଶ କହିଲେ ଯାହା ବୁଝନ୍ତି, ଭାଷା କେବଳ ସେହି ଭାବପ୍ରକାଶର ଉପଯୋଗୀ ହେଲେ ଚଳିବ ନାହିଁ । ଭାବପ୍ରକାଶ ସଙ୍ଗେ ସଙ୍ଗେ ଭାଷା ସରସ, ସୁନ୍ଦର ଓ ପ୍ରସାଦଗୁଣବିଶିଷ୍ଟ ହେବା ଉଚିତ । ଭାଷା ସରଳ, ତରଳ, ଲଳିତ ନ ହେଲେ କାବ୍ୟମୟୀ ହୁଏ ନାହିଁ । ଏ କଥା ରବୀନ୍ଦ୍ରନାଥ ଯେପରି ଉପଲବ୍ଧି କରିଥିଲେ ଅନ୍ୟପକ୍ଷରେ ତାହା ସେପରି ସହଜ ହୋଇ ନାହିଁ । ସୁତରାଂ ଐଶ୍ୱର୍ଯ୍ୟ ସଙ୍ଗେ ମାଧୁର୍ଯ୍ୟର ଏବଂ ପ୍ରାଞ୍ଜଳତା ସଙ୍ଗେ ପ୍ରସନ୍ନତାର ସୁନ୍ଦର ଶୋଭନ ସମାବେଶ ପ୍ରତି ତାଙ୍କର ଅଭ୍ରାନ୍ତ ତୀକ୍ଷ୍ଣ ଦୃଷ୍ଟି ଥିଲା । ଜୟଦେବ, ଚଣ୍ଡୀଦାସ, ବିଦ୍ୟାପତି, ରାମପ୍ରସାଦ, ନୀଳକଣ୍ଠ ପ୍ରଭୃତିଙ୍କର ଧାତ୍ରୀସ୍ୱରୂପିଣୀ କବିମାତୃକା ବଙ୍ଗଜନନୀର କୋମଳକୋଳରେ ଏହି କ୍ଷଣଜନ୍ମା କବିଚୂଡ଼ାମଣିଙ୍କର ଜନ୍ମ ଏକାବେଳକେ ନିରର୍ଥକ ନୁହେଁ । ସେ ମାତୃଭାଷାର ସେବା କରିବା ମାନସରେ ବାଗ୍‌ଦେବୀଙ୍କ ମନ୍ଦିରପ୍ରାଙ୍ଗଣରେ ପ୍ରବେଶ କରିବା ପୂର୍ବରୁ ଅନେକ ନିଷ୍ଠାପର କୃତବିଦ୍ୟ ସେବାନିପୁଣ ସେବକମାନେ ନାନା ବିଧିବିଧାନ ସଙ୍କଳନ କରି ବାଣୀକୁଞ୍ଜକୁ ଅବିନଶ୍ୱର ଗୀତିଗନ୍ଧମୟ କରିଦେଇଥିଲେ । ଭାଷାର ସାରଲ୍ୟ ତଥା ଲାଳିତ୍ୟବିଧାନରେ ସେମାନଙ୍କର କୃତିକଳାପ ଅତୀବ ପ୍ରଶଂସାର୍ହ ହୋଇଥିଲା; ସୁତରାଂ ଭାଷାକୁ କାବ୍ୟମୟୀ ତଥା ସଙ୍ଗୀତମୟୀ କରିବାର ପଥ ରବୀନ୍ଦ୍ରନାଥଙ୍କ ନିମନ୍ତେ

ଦୁର୍ଦ୍ଦିରୁ ସୁଗମ କରି ଦିଆଯାଇଥିଲା । ରବୀନ୍ଦ୍ରନାଥ ଦିଗ୍‌ବିଜୟରେ ବାହାରି ଦେଖିଲେ ଯେ ତାଙ୍କର ଚତୁରଙ୍ଗ ସେନା ସର୍ବବିଧ ସମରସଜ୍ଜାରେ ସଜ୍ଜିତ ହୋଇ ସାମରିକ ନିୟମାନୁଯାୟୀ ଶ୍ରେଣୀବଦ୍ଧଭାବରେ କେବଳ ସେନାପତିଙ୍କ ଆଦେଶ ଅପେକ୍ଷାରେହିଁ ପ୍ରସ୍ତୁତ । ମାତ୍ର ବ୍ୟୂହରଚନା ଓ ସୈନ୍ୟଚାଳନାଭାର ସେନାପତିଙ୍କ ଉପରେ ନ୍ୟସ୍ତ । ଏହା କହିବାକୁ ଯାଇ ରବୀନ୍ଦ୍ରନାଥଙ୍କ କବିପ୍ରତିଭାର ମୌଳିକତା ଖର୍ବ କରିବାକୁ ଚେଷ୍ଟା କରୁ ନାହିଁ । ମହାକବି ସେକ୍‌ସପିଅର ଓ ତାଙ୍କର ଦୃଶ୍ୟକାବ୍ୟ ଗୁଡ଼ିକର କଥାବସ୍ତୁ ଏବଂ ସ୍ଥଳବିଶେଷରେ ପ୍ରକାଶର ଭାଷାପର୍ଯ୍ୟନ୍ତ ନାନାସ୍ଥାନରୁ ଆହରଣ କରି ସୁଦ୍ଧା ଜଗତର ସୁବିଶ୍ୟାତ ନାଟ୍ୟକାରରୂପେ ପରିଗଣିତ ହୋଇଛନ୍ତି । ଏପରି କରିବାଦ୍ୱାରା ତାଙ୍କର ମୌଳିକତା ହ୍ରାସ ନ ହୋଇ ବରଂ ପୁଷ୍ଟ ଓ ସମୃଦ୍ଧ ହୋଇଅଛି । ରବୀନ୍ଦ୍ରନାଥଙ୍କ ପକ୍ଷରେ ମଧ୍ୟ ଏ ଉକ୍ତି ସମ୍ପୂର୍ଣ୍ଣରୂପେ ପ୍ରଯୁଜ୍ୟ ।

ଗୀତିକାବ୍ୟ ବ୍ୟତୀତ ସେ ସାହିତ୍ୟ ଓ ଲଳିତକଳାର ନାନା ବିଭାଗରେ ପ୍ରଭୂତ କୃତିତ୍ୱ ଅର୍ଜନ କରିଥିଲେ । ତାଙ୍କର କ୍ଷୁଦ୍ରଗଳ୍ପ ଗୁଡ଼ିକ ବଙ୍ଗସାହିତ୍ୟରେ ଯୁଗାନ୍ତର ଘଟାଇଅଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେଗୁଡ଼ିକ ଅତ୍ୟନ୍ତ ଉପାଦେୟ ଓ ଉପଭୋଗ୍ୟ ଗଳ୍ପରୂପେ ବିଶ୍ୱସାହିତ୍ୟରେ ସୁପରିଚିତ । ସେ ସବୁ ନାନା ଭାଷାରେ ଅନୂଦିତ ହୋଇ ବହୁଳ ପ୍ରଚାରଲାଭ କରିଅଛି । ତାଙ୍କର ସୁଚିନ୍ତିତ ପ୍ରବନ୍ଧଗୁଡ଼ିକରେ ତାଙ୍କର ପ୍ରଗାଢ଼ ଚିନ୍ତାଶୀଳତା ସଙ୍ଗେ ସଙ୍ଗେ ସୂକ୍ଷ୍ମ ତଥ୍ୟାନୁସନ୍ଧାନଦକ୍ଷତାର ପୂର୍ଣ୍ଣ ପରିଚୟ ମିଳେ । ସେଗୁଡ଼ିକ ସାହିତ୍ୟ-ଆସ୍ୱାଦନର ପଥକୁ ସୁଗମ କରି ଦେଇଅଛି । ତାଙ୍କର 'ଆଧୁନିକ ସାହିତ୍ୟ ଓ ପ୍ରାଚୀନ ସାହିତ୍ୟ' ଶୀର୍ଷକ ପ୍ରବନ୍ଧ ପାଠ କଲେ ଜଣାଯାଏ, ସେପରି ନିଗୂଢ଼ ତଥ୍ୟସମ୍ବଳିତ ଓ ଗମ୍ଭୀରଗବେଷଣାମୂଳକ ସମାଲୋଚନା ପୁସ୍ତକ ଭାରତସାହିତ୍ୟରେ ଅତୁଳନୀୟ । ଶକୁନ୍ତଳା ନାଟକର କାବ୍ୟକଳାର ବୈଚିତ୍ର୍ୟ ଉଦ୍‌ଘାଟନ କରି କାଳିଦାସଙ୍କ ସଙ୍ଗେ ସେକ୍ସପିଅରଙ୍କ ତୁଳନାରେ କାବ୍ୟରସାସ୍ୱାଦନର ପଥ ପ୍ରଦର୍ଶନ

କରିଅଛନ୍ତି । ଚିତ୍ରକଳାରେ ମଧ୍ୟ ତାଙ୍କର ବିଶେଷ ଦକ୍ଷତା ଥିଲା । ତାଙ୍କ କର୍ତ୍ତୃକ ଅଙ୍କିତ ନାନାବିଧ ଚିତ୍ର ବିଦେଶରେ ଭାରି ସମାଦୃତ ହୋଇଅଛି । ସେ ନିଜେ ଅଭିନେତାମାନଙ୍କୁ ଅଭିନୟକୁଶଳତା ଶିଖାଇ ପାରୁଥିଲେ । ସେ ଜଣେ ସୁକଣ୍ଠଗାୟକ ଓ ଲବ୍ଧପ୍ରତିଷ୍ଠ ବକ୍ତା ଥିଲେ । ତାଙ୍କର ବହୁତୋମୁଖୀ ପ୍ରତିଭାର ସମ୍ୟକ ଆଲୋଚନା ଅସମ୍ଭବ ।

ତାଙ୍କର ଉପନ୍ୟାସ ଓ ନାଟକ ପ୍ରକୃତ ମାନବହୃଦୟର ଅନ୍ତରତମ ପ୍ରଦେଶର ଭାବରାଜିର ଶୋଭନ ଅଭିବ୍ୟକ୍ତିରୂପେ ବିଶେଷଜ୍ଞମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲେହେଁ ଏ ଦିଗରେ ସେ ବିଶେଷ କୃତିତ୍ୱ ଅର୍ଜନ କରିଥିଲେ ବୋଲି ମୋର ମନେ ହୁଏ ନାହିଁ । ମୋର ଅନୁମାନ ହୁଏ ତାଙ୍କର କବିହୃଦୟର ଅବସାଦ ସମୟରେ ଅର୍ଥାତ୍ ଯେତେବେଳେ ତାଙ୍କର କବିପ୍ରେରଣା ମଉଳି ଆସେ ଏବଂ ଭାବୋଚ୍ଛ୍ୱାସ ଶିଥିଳ ହୋଇଯାଏ, ସେହି ଅବସାଦହିମଜର୍ଜରିତ ଜଡ଼ତାରେ ତାଙ୍କର ହୃଦୟକମଳାସୀନା ଶ୍ୱେତପଦ୍ମାସନାଙ୍କର ଶ୍ୱେତକମଳଶୋଭା ଝାଉଁଳି ପଡ଼େ ଓ ବୀଣାର ଝଙ୍କାର କ୍ଷୀଣ ହୋଇଆସେ, ତେବେ ସେହି ସମୟମାନଙ୍କରେ ବୃଥା କାଳକ୍ଷେପଣ ନ କରି ଉପନ୍ୟାସ ଓ ନାଟକର, ଗଦ୍ୟରାଜ୍ୟରେ ବସି ଅବସର ଗ୍ରହଣ କରନ୍ତି । ବସିବାଠାରୁ ଖଟିବା ଭଲ । ଯଥାଲବ୍ଧ ଭାବ ସେ ସେଥିକରେ ସନ୍ତୁଷ୍ଟ ହୋଇପଡ଼ନ୍ତି । ଶୁଣାଯାଏ, ଜଣେ ଅବସରପ୍ରାପ୍ତ ଡାକ୍ତର ଅସ୍ତ୍ରୋପଚାର ନ ଥିବା ସମୟରେ ତାଙ୍କର ଅସ୍ତ୍ରୋପଚାରକ୍ଷମ ଶାଣିତ ଛୁରିକାଟି ଫାଲେ କଲଙ୍କି ଧରିଯିବ, ସେଥିପାଇଁ ସେ ବାଡ଼ିର ବଢ଼ୁଥିବା ପୋକସୁଙ୍ଗାଠାରୁ ଆରମ୍ଭ କରି କ୍ଷେତର ବାଳୁଙ୍ଗା ପର୍ଯ୍ୟନ୍ତ କାଟି ନିର୍ମୂଳ କରିଦେଇ ନିଜର ତଥା ନିଜ ଛୁରିକାର ଅସ୍ତ୍ରୋପଚାରକଣ୍ଡୂ ନିବାରଣ କରୁଥିଲେ । କିନ୍ତୁ ଲୋକେ ବୁଝନ୍ତୁ ବା ନ ବୁଝନ୍ତୁ ଯାହା କିଛି ରବୀନ୍ଦ୍ରନାଥ ଲେଖିଛନ୍ତି, ସେଗୁଡ଼ିକ ଯେ ଉଚ୍ଚକୋଟିର ହେବ—ଏହା ଅବଶ୍ୟମ୍ଭାବୀ । "ରାଜାର ନନ୍ଦିନୀ ପ୍ୟାରୀ ଯାଙ୍କରେନ ତା ଶୋଭା ପାଏ ।" ଏ ଧାରଣା ଭ୍ରମାତ୍ମକ ।

ତାଙ୍କର ବହୁତୋମୁଖୀ ପ୍ରତିଭାର ଉଦ୍‌ଦର୍ଶନ ମଧ୍ୟ କରି ତାଙ୍କ ଜୀବନର ଗୋଟିଏ ବିଶେଷତ୍ୱ ଆଡ଼କୁ ଦୃଷ୍ଟି ନିକ୍ଷେପ କରାଯାଉ । ସେ ଆଜୀବନ ଲକ୍ଷ୍ମୀ ସରସ୍ୱତୀ ଉଭୟଙ୍କ ସମାନ ସ୍ନେହବାତ୍ସଲ୍ୟରେ ଲାଳିତ-ପାଳିତ ହୋଇଥିଲେ । ମା ଲକ୍ଷ୍ମୀ ତାଙ୍କର ବିମାତୃସୁଲଭ ବାମ୍ୟଭାବ ବର୍ଜନ କରି ସପତ୍ନୀ ସରସ୍ୱତୀଙ୍କ ବରପୁତ୍ରଙ୍କୁ ମଧ୍ୟ ନିଜର ସନ୍ତାନ ପରି ପ୍ରଗାଢ଼ ସ୍ନେହଚକ୍ଷୁରେ ଦେଖୁଥିଲେ । ମାଇକେଲଙ୍କ ଶୋଚନୀୟ ଦଶା ଦେଖି କବି ହେମଚନ୍ଦ୍ର ମା ସରସ୍ୱତୀଙ୍କ ଉପରେ ଦୋଷାରୋପ କରି ଲେଖିଥିଲେ—

"ହାୟ ମା ଭାରତୀ ଚିରକାଳ ତୋର ଏଇ କି କୁଖ୍ୟାତି ର'ବେ,
ଯେ ସେବିବେ ଓ ପଦକମଳ ସେଇ ସେ ଦରିଦ୍ର ହବେ ।"

ରବୀନ୍ଦ୍ରନାଥ ବାଗ୍‌ଦେବୀଙ୍କ ସୁଯୋଗ୍ୟ ପୁତ୍ରରୂପେ ତାଙ୍କୁ ଏହି ଦୁରପନେୟ କଳଙ୍କରୂପ ନରକରୁ ଉଦ୍ଧାର କରି ନିଜର ପୁତ୍ରନାମ ସାର୍ଥକ କରିଅଛନ୍ତି ।

---

## କାବ୍ୟ ବା ସାହିତ୍ୟ ଏବଂ ଆଧୁନିକ ଦୃଷ୍ଟିକୋଣ

"କହି ଜାଣିଲେ କଥା ସୁନ୍ଦର"। "ଖା, ଭୁଞ୍ଜ୍, ଗିଳ୍" କହିଲେ ତତ୍ତ୍ୱତଃ ଏକାର୍ଥ ଭୋଜନକ୍ରିୟା ବୁଝାଇଲେହେଁ ଭାବ ଓ ପ୍ରକାଶଭଙ୍ଗୀର ଭେଦରେ ହୃଦୟକୁ ସମାନଭାବରେ ସ୍ପର୍ଶ କରେ ନାହିଁ। "ଶୁଷ୍କୋ ବୃକ୍ଷସ୍ତିଷ୍ଠତ୍ୟଗ୍ରେ" କହିଲେ ଯାହା ବୁଝାଏ, ଅମରକବି ୰କାଳିଦାସଙ୍କ "ନୀରସତରୁରିହ ବିଲସତି ପୁରତଃ" ବାକ୍ୟରେ ମଧ୍ୟ ତତ୍ତ୍ୱତଃ ତାହାହିଁ ବୁଝାଏ। ମାତ୍ର ଉଭୟ ଉକ୍ତିର ପ୍ରକାଶଭଙ୍ଗୀରେ ଯେ ମୌଳିକ ପାର୍ଥକ୍ୟ ରହିଅଛି, ତାହା ପ୍ରତ୍ୟେକ ହୃଦୟବାନ୍ ବ୍ୟକ୍ତିମାନେହିଁ ବୁଝି ପାରିବେ। ପ୍ରଥମ ଉକ୍ତିଟି ନୀରସ ଖାଣ୍ଟି ସତ୍ୟର ଅଭିବ୍ୟକ୍ତି ମାତ୍ର। କିନ୍ତୁ କବିବରଙ୍କ ଉକ୍ତିର ପ୍ରକାଶଭଙ୍ଗୀ କେଡ଼େ ସରସ ଓ ମଧୁର; ତାଙ୍କର ଅନୁପ୍ରାସରସାଣିତ ବାକ୍ୟଟି କେଡ଼େ ହୃତ୍‌କର୍ଣ୍ଣ-ରସାୟନ ହୋଇଛି, କେବଳ ପ୍ରକାଶଭଙ୍ଗୀରେ ହିଁନା। ଉଭୟ ଉକ୍ତିର ଅଭ୍ୟନ୍ତରୀଣ ସତ୍ୟ ଏକ ହେଲେହେଁ ପଦବିନ୍ୟାସମାଧୁର୍ଯ୍ୟର ତାରତମ୍ୟରେ ଗୋଟିକର କଳାକୁଶଳର ଉତ୍କର୍ଷ ସ୍ୱତଃସିଦ୍ଧ ହୋଇପଡ଼ୁଛି। ଏହି ପ୍ରକାଶ-ଭଙ୍ଗୀର ବୈଶିଷ୍ଟ୍ୟ, ଏହି ରଚନାଶୈଳୀର କଳାକୌଶଳହିଁ ଚମତ୍କାରିତା ଉତ୍ପାଦନ କରେ। ସେଥିପାଇଁ ଖାଣ୍ଟି ସତ୍ୟଗର୍ଭକ ସାଧାରଣ ବର୍ଣ୍ଣନାଠାରୁ ସୌନ୍ଦର୍ଯ୍ୟବିଳାସୀ କଳାଜୀବୀର ପ୍ରକାଶଭଙ୍ଗୀ ଏତେ ହୃଦୟସ୍ପର୍ଶୀ ହୋଇଥାଏ। ଏହି ପ୍ରକାଶଭଙ୍ଗୀ ଉପରେହିଁ ସତ୍ ସାହିତ୍ୟ ବା କାବ୍ୟର ଭିତ୍ତି ଗଠିତ ହୁଏ। ସତ୍ୟଶିବକୁ ସୌନ୍ଦର୍ଯ୍ୟର ଛାଞ୍ଚରେ ଢାଳିବାହିଁ ସାହିତ୍ୟକଳା ବା କାବ୍ୟକଳାର ଉପଜୀବ୍ୟ।

ଅନନ୍ତ ବ୍ରହ୍ମାଣ୍ଡ ଏକ ମହାବୈଚିତ୍ର୍ୟମୟୀ ମାହେଶ୍ୱରୀ ଶକ୍ତିଦ୍ୱାରା ଶୃଙ୍ଖଳିତ ଓ ନିୟନ୍ତ୍ରିତ। ଏହା ଏକ ସର୍ବବ୍ୟାପିନୀ ଭୂମାସ୍ୱରୂପିଣୀ ପ୍ରାଣନଶକ୍ତିର ଲୀଳାକ୍ଷେତ୍ର। ଅଣୁ ପରମାଣୁ-ଠାରୁ ଅଭ୍ରଂଲିହ ହିମାଳୟ ପର୍ଯ୍ୟନ୍ତ ସ୍ଥାବରଜଙ୍ଗମ, ଜଡ଼ଚେତନ ପ୍ରକୃତି ସର୍ବତ୍ର ସେହି ପ୍ରାଣଶକ୍ତିର କ୍ରିୟା ଅପ୍ରତିହତଭାବରେ

ପ୍ରଭୃତି ବିସ୍ତାର କରି ରହିଛି । ଏହି ପ୍ରାଣଶକ୍ତିର କ୍ରିୟା ଭିଷ୍ମ ସୂକ୍ଷ୍ମ ଓ ନିଗୂଢ଼ । ମନୁଷ୍ୟ କୌତୂହଳାକ୍ରାନ୍ତ ହୋଇ ସେହି ପ୍ରାଣକ୍ରିୟାର ନିଗୂଢ଼ ରହସ୍ୟଟି ଉଦ୍‌ଘାଟନ କରିବାରେ ବ୍ୟସ୍ତ । ସେ ତାହାର ମନଃ ପ୍ରାଣ ନିୟୋଗ କରି ସେହି ରହସ୍ୟଗନ୍ତାଘରର ଗୁପ୍ତଦ୍ୱାରର କଞ୍ଚି ଏପର୍ଯ୍ୟନ୍ତ ପାଇ ନାହିଁ । କିନ୍ତୁ ତାହାର ପ୍ରଗାଢ଼ ଅଧ୍ୟବସାୟ, ସୂକ୍ଷ୍ମ ଗବେଷଣା ଓ ତୀବ୍ର ଅନୁସନ୍ଧିତ୍ସାର ଅନ୍ତ ନାହିଁ । "ଖେପା ଖୁଜେ ଖୁଜେ ଫିରେ ପରଶ ପାଥର" । ସେହି ଅନୁସନ୍ଧିତ୍ସାର ଫଳସ୍ୱରୂପ ଆଜି ଆମ୍ଭେମାନେ ସତ୍ୟ, ଶିବ, ସୁନ୍ଦରର ତ୍ରିବେଣୀସଙ୍ଗମରେ ନିତ୍ୟ-ଅବଗାହନ କରି ଧନ୍ୟ ହେଉଅଛୁଁ । ଜ୍ଞାନ-ବିଜ୍ଞାନ-ବିଦ୍ୟା-ପରାବିଦ୍ୟା-କାବ୍ୟ-କଳାର ଅନନ୍ତମନ୍ଦାକିନୀଧାରା ଆମ୍ଭମାନଙ୍କ ତ୍ରିତାପଦଗ୍ଧ ପ୍ରାଣକୁ ଶୀତଳ କରି ଦେଉଅଛି । ସେହି ଅମୃତନିଷ୍ୟନ୍ଦକୁ ବିନ୍ଦୁମାତ୍ର ପାନପୂର୍ବକ ଲୋକ ମୃତ୍ୟୁକୁ ପର୍ଯ୍ୟନ୍ତ ତୁଚ୍ଛ କରି କାଞ୍ଚନଜଙ୍ଘା ଏବଂ ଗୌରୀଶୃଙ୍ଗ ଆବିଷ୍କାର ଅଭିଯାନରେ ପ୍ରାଣସମର୍ପଣ କରିବାକୁ କୃତସଙ୍କଳ୍ପ ହୋଇ ପଡ଼ୁଛି । ଚିରତୁଷାରାଚ୍ଛନ୍ନ ମେରୁରାଜ୍ୟର ଆବିଷ୍କାରଲାଳସା ମୃତ୍ୟୁବିଭୀଷିକାକୁ ଅକିଞ୍ଚିତ୍‌କର ମନେ କରି ସେହି ଦ୍ୱାରା କୌତୂହଳକୁ ଚରିତାର୍ଥ କରୁଅଛି । ମନୁଷ୍ୟ ଅଜରାମରବତ୍ ପ୍ରଜ୍ଞାର ଅନୁଶୀଳନରେ ବିହ୍ୱଳ ହୋଇପଡ଼ୁଛି । କେହି ପ୍ରାଜ୍ଞ ପୁଣି କଳା କୁହୁକରେ ଇନ୍ଦ୍ରଜାଲ ସୃଷ୍ଟି କରି ନିଜେ ଆତ୍ମହରା ହୋଇ ଅପରକୁ ସେହି ଆନନ୍ଦ ସାଗରରେ ବୁଡ଼ି ଦେବାକୁ ପ୍ରଲୋଭିତ କରୁଅଛି ।

କୌଣସି କୌଣସି ସୌନ୍ଦର୍ଯ୍ୟପିପାସୁ କଳାଜୀବୀଙ୍କର ଜୀବନବ୍ୟାପୀ କଠୋର ନିଷ୍ଠାପରତା, ଏକାଗ୍ରତା ଏବଂ ତନ୍ମୟତା ଦେଖିଲେ ସେହି କୌତୂହଳ ଯେ କି ଗୋଟାଏ ସର୍ବଗ୍ରାସୀ ନିଶା ତାହାର କିଛି ଆଭାସ ମିଳି-ପାରେ । ସମସ୍ତଙ୍କ ଭାଗ୍ୟରେ ତାହା ନ ହେଲେ ମଧ୍ୟ କାବ୍ୟକଳାର ଆକର୍ଷଣ ଯେ ସମୟ ସମୟରେ ଘୋର ଉନ୍ମାଦନାର ସୃଷ୍ଟି କରି ମାନବହୃଦୟକୁ ବିହ୍ୱଳ କରିଦିଏ ସେଥିରେ ସନ୍ଦେହ ନାହିଁ ।

ଏହି କୌତୂହଳରୁ, ଏହି ବିଶ୍ୱବ୍ୟାପିନୀ ପ୍ରାଣଶକ୍ତିର ଅନ୍ତର୍ଗୂଢ଼ ରହସ୍ୟଗୁଡ଼ିକ ଉଦ୍‌ଘାଟନ କରିବାର ଅନୁସନ୍ଧିତ୍ସାର ପ୍ରାବଲ୍ୟରୁ ହିଁ ସମସ୍ତ ଜ୍ଞାନ-ବିଜ୍ଞାନ ଓ କଳାର ଉତ୍ପତ୍ତି ।

ଜଡ଼ବିଜ୍ଞାନ ନାନାଦିଗରୁ ଏ ପ୍ରଶ୍ନର ସମାଧାନ ପାଇଁ ପ୍ରୟାସ କରୁଅଛି । ସତ୍ୟର ସନ୍ଧାନରେ ବ୍ରତୀ ହୋଇ ଜଡ଼ବିଜ୍ଞାନ ମନୁଷ୍ୟ ସଭ୍ୟତାର ସୃଷ୍ଟି, କୃଷ୍ଟି, ପୁଷ୍ଟିର ଅଙ୍ଗୀଭୂତ ହୋଇ ପଡ଼ିଅଛି । ମାନବଜୀବନର ଐହିକ ସୁଖସ୍ୱାଚ୍ଛନ୍ଦ୍ୟର ବିଧାୟକରୂପେ ତାହାର ସ୍ଥାନ ଖୁବ ଉଚ୍ଚ ।

ମନୁଷ୍ୟର ଶାରୀରିକ ଓ ମାନସିକ ଉତ୍କର୍ଷ ଜଡ଼ବିଜ୍ଞାନ ଓ ମନୋବିଜ୍ଞାନର ଅନୁଶୀଳନଦ୍ୱାରହିଁ ସମ୍ଭବପର ହୋଇଅଛି । ଏମନ୍ତ କି ଅଧ୍ୟାତ୍ମବିଜ୍ଞାନ ମଧ୍ୟ ନାନାଭାବରେ ମନୁଷ୍ୟର କଲ୍ୟାଣସାଧନରେ ଲାଗିଅଛି ଓ ତାହାର ଚର୍ଚ୍ଚାରେ ଦେଶର ବୃଦ୍ଧାବସ୍ଥ ସଭ୍ୟତାର ଦୃଷ୍ଟିକୋଣ ମଧ୍ୟ ରୂପାନ୍ତରିତ ହୋଇଅଛି । କିନ୍ତୁ "ଏହୋ ବାହ୍ୟ ଆଗେ କହ ଆର୍" ଏହା କହି କହି କ୍ରମଗୂଢ଼ତମ ରହସ୍ୟଟି ଶୁଣିବାର ଇଚ୍ଛା କାହାର ବା ନ ହେବ ? ଏହା ଯେ କେବଳ ବାହ୍ୟମାତ୍ର, ପ୍ରଥମେ ତାହାହିଁ ବୁଝିବାର ଚେଷ୍ଟା କରିଯାଉ ।

ଭୌତିକ ଜୀବନର ପଥ ସୁଗମ କରି ଜଡ଼ବିଜ୍ଞାନ ଅସାଧ୍ୟ ସାଧନ କରିଅଛି । ଆଧିବ୍ୟାଧିମୟ ଜୀବନର ଦୁର୍ବିସହଭାରକୁ ବହୁପରିମାଣରେ ଲାଘବ କରି ଭୋଗବିଳାସର ଉପକରଣମାନ ଆବିଷ୍କାର ଏବଂ ଉଦ୍ଭାବନରେ ଲାଗିଅଛି । ରାବଣ ପରି ଛପନଗଣ୍ଡା ଯୁଗକୁ ବର ପାଇ ଓ ସେଥିରେ ମଧ୍ୟ ସନ୍ତୁଷ୍ଟ ନ ହୋଇ ହିରଣ୍ୟକଶ୍ୟପୁ ପରି ଅମର ହେବାର କୌଶଳ ଉଣ୍ଡି ବୁଲୁଛି । ମହାମାୟାଙ୍କ ମାହେଶ୍ୱରୀ ବିଭୂତି ସମୀପରେ ଧରଣା ଦେଇ ପଞ୍ଚଭୂତଙ୍କୁ ଅଧିକାଂଶ ଭୂତଗୁଡ଼ିକୁ କରାୟତ୍ତ କରି ଭୂତନାଥ ସାଜିବାକୁ ବସିଲାଣି ।

ଜଡ଼ବିଜ୍ଞାନର ଏହି ଦୁର୍ବାରଲାଳସାକୁ ଦେଖି ଅଧ୍ୟାତ୍ମବିଜ୍ଞାନ ମନୋବିଜ୍ଞାନକୁ ଡାକି କହୁଛି, "ଭୂତନାଥ ହେବା କଅଣ କେବଳ ମୁଖର

କଥା ? ଭୂତନାଥ ପରି ହିମ୍ଳେକର ନଶ୍ୱର ଆିଶ୍ୱର୍ଯ୍ୟକୁ ତୁଚ୍ଛ କରି ଶ୍ମଶାନରେ ବାସ କରିବାକୁ ସୁଖ ମଣନ୍ତି । ଏପରି ଭୋଗୈଶ୍ୱର୍ଯ୍ୟରୁ ବାହ୍ମନ ହୋଇ ଓ ନଶ୍ୱର ବିଷୟଭୋଗରୂପ ଉତ୍କଟବିଷ ପାନ କରି ହଜମ କରିବା ଭଳି ଶକ୍ତିର ଅଧିକାରୀ ବୋଲି ସେ ସର୍ବମଙ୍ଗଳାଙ୍କୁ ଅର୍ଦ୍ଧାଙ୍ଗିନୀରୂପେ ଲାଭ କରି ପାରିଥିଲେ । କେତେ କେତେ ଯୋଗୀ ଋଷି ଅଷ୍ଟସିଦ୍ଧି ଓ ନବନିଧିକୁ କରତଳଗତ ଆମଳକୀ ପରି ଲାଭ କରି ମଧ୍ୟ ନିଜର କ୍ଷୁଦ୍ରତାକୁ ଭୁଲି ପାରି ନାହାନ୍ତି । ଯେଉଁ ଯୋଗୀ ଯୋଗବଳରେ ପଞ୍ଚଭୂତକୁ ଜୟ କରି ବ୍ରାହ୍ମମୂହୂର୍ତ୍ତରେ ମାନସ-ସରୋବରସ୍ଥ ଭଜନକୁଟୀର ତ୍ୟାଗ କରି ହ୍ୱାରିକାରେ ସମୁଦ୍ରସ୍ନାନ ସାରି ଓ ତତ୍ପରେ ନୀଳାଦ୍ରିକନ୍ଦରରେ ଦାରୁବ୍ରହ୍ମଙ୍କ ଦର୍ଶନ ବଢ଼ାଇ ଏବଂ ପଥି ମଧ୍ୟରେ ପ୍ରୟାଗର ତ୍ରିବେଣୀ-ସଙ୍ଗମରେ ଗୋଟାଏ ବୁଡ଼ ଦେଇ ପ୍ରଭାତ ହୋଇବା ପୂର୍ବ ନିଜର ଭଜନ-କୁଟୀରକୁ ଫେରିଆସେ, ସେପରି ଯୋଗିବର ପୁଣି କଅଣ ଖୋଜି ଏତେ ବ୍ୟାକୁଳ ହୋଇ ପଡ଼ୁଛନ୍ତି ?"

ଏ ପ୍ରଶ୍ନର ଉତ୍ତର ଦେବାର ଚେଷ୍ଟା କରିବା ପୂର୍ବରୁ ମନେ ରଖିବାକୁ ହେବ ଯେ ଜଡ଼ବିଜ୍ଞାନର ଦୁଃସାଧ୍ୟସାଧନ ଓ ଏମନ୍ତ କି ଅଧ୍ୟାତ୍ମବିଜ୍ଞାନର କଳ୍ପନାତୀତ ଅଘଟନ-ଘଟନ-ପଟୀୟସୀ ଶକ୍ତିର ଅଧୀଶ୍ୱର କରଣିରେ ମଧ୍ୟ ମାନବହୃଦୟ ତାହାର କାଂକ୍ଷିତତମ ପଦବୀ ପାଇ ପାରି ନାହିଁ । ତେଣୁ ସୂକ୍ଷ୍ମମନରେ ସେ କହିବାକୁ ବାଧ୍ୟ ହେଉଛି, "ଏହୋ ବାହ୍ୟ ଆଗେ କହ ଆର" ।

ଜଡ଼ବିଜ୍ଞାନର ଭୂତଶୁଦ୍ଧି କହ ବା ଭୂତସିଦ୍ଧି ବା ଭୂତକେଳି କହ, ଏହି ପ୍ରଗାଢ଼ ଭୂତାଭିନିବେଶଠାରୁ ଆରମ୍ଭ କରି ଅଧ୍ୟାତ୍ମବିଜ୍ଞାନର ଅଷ୍ଟସିଦ୍ଧି ନବନିଧି ପର୍ଯ୍ୟନ୍ତ କାହିଁରେହିଁ ତାହାର ସନ୍ତୋଷ ନାହିଁ—କାହିଁରେହିଁ ତାହାର ଦୁର୍ବାରପିପାସାର ଶାନ୍ତି ନାହିଁ । "ଏକେବାରେ ଯେତେ ଗୃହ୍ୟ ଅରଣ୍ୟ ପାଥର ।" ସେ ଜାଣିଛି, ଖୁବ ଭଲକରି ଜାଣିଛି, "ଅଛି ତାର ସନ୍ତାପିତ ପ୍ରାଣର ଚନ୍ଦନ" ; ସେ ସେହି ଚନ୍ଦନତରୁର ସନ୍ଧାନରେ ଛୁଟିଛି, ତାକୁ ଗୋଟାଏ ନିମ ଗଛ ଦେଖାଇ ବହଲାଇ ଦେଲେ ସେ ଭୁଲିବ କି ?

ସର୍ବସୁଲକ୍ଷଣଯୁକ୍ତ ଦୈବୀଶକ୍ତି-ସମାଶ୍ରିତ କଳ୍ପବୃକ୍ଷରେ ବଡ଼ଠାକୁରଙ୍କ ନବକଳେବର ଗଠିତ ହେଲେ ପଛେ ହେଉ—ସେଥିକି ତାର ଭ୍ରୂକ୍ଷେପ ନାହିଁ—ମଳୟ-ଚନ୍ଦନତରୁହିଁ ତାହାର ଲୋଡ଼ା ; ତେଣୁ ସେ ତାହାର ସନ୍ଧାନରେ ବନସ୍ତ ଅବିଶ୍ରାନ୍ତଭାବରେ ବୁଲୁଛି—"ଖେପା ଖୁଜେ ଖୁଜେ ଫିରେ ପରଶ ପାଥର" ।

ତେଣୁ ଇନ୍ଦ୍ରିୟବିଜ୍ଞାନର ବିଶ୍ଳେଷଣଜନ୍ୟ ଅନୁସନ୍ଧାନଠାରୁ ଆରମ୍ଭ କରି, ଅଧ୍ୟାତ୍ମବିଜ୍ଞାନର ଓ ଅଷ୍ଟାଙ୍ଗ ଯୋଗ ପ୍ରଭୃତି ତାହାର ଗନ୍ତବ୍ୟପଥରେ ଗୋଟାଏ ଗୋଟାଏ ଘାଟିମାତ୍ର । ସେହି ସେହି ଘାଟିର ଚଟିମାନଙ୍କରେ ଟିକିଏ ଅଧେ ବିଶ୍ରାମ କରି ପୁଣି ଦୂରଗନ୍ତବ୍ୟପଥରେ ଯିବାକୁ ହେବ । ସେ ଯେ ଚିର ଯାଯାବର—ତାହାର ପଥିମଧ୍ୟସ୍ଥ ଧର୍ମଶାଳାରେ ପଡ଼ି ରହିବାର ଉପାୟ କାହିଁ ? ପଞ୍ଚକୋଷ ପରିକ୍ରମା କରିବାକୁ ଯାଇ କେବଳ ପ୍ରଥମ ଓ ଦ୍ୱିତୀୟ କୋଷରେ ପ୍ରବେଶଲାଭ କରି ସୁଦୂର ପଞ୍ଚମ କୋଷର କଥା ଭୁଲିଯିବା ବାତୁଳତା ମାତ୍ର । ଜଡ଼ବିଜ୍ଞାନ, ମନୋବିଜ୍ଞାନ ଏମନ୍ତ କି ଅଧ୍ୟାତ୍ମ-ବିଜ୍ଞାନ ମଧ୍ୟ ବିଜ୍ଞାନମୟ କୋଷ ପର୍ଯ୍ୟନ୍ତ ନେଇଯାଇ ପାରିବେ । ଆନନ୍ଦମୟ କୋଷର କର୍ଣ୍ଣୀ କାହିଁ ? ତେବେ ଏତିକି କୁହାଯାଇ ପାରେ ସେମାନେ ଆନନ୍ଦମୟ କୋଷାଭ୍ୟନ୍ତରସ୍ଥ ଆନନ୍ଦମନ୍ଦାକିନୀର ଉଚ୍ଛଳ ତରଙ୍ଗମାଳାର ସଲୀଳବିଳାସଭଙ୍ଗୀ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ହୃଦୟର ଦୁର୍ବାର-ଲାଳସାକୁ ଅତି ଦୁଃସହ ଉତ୍କଣ୍ଠାରେ ପରିଣତ କରନ୍ତି । ହୃଦୟ ତୀବ୍ର ଉତ୍କଣ୍ଠାରେ, ପ୍ରଗାଢ଼ "ଲୌଲ୍ୟ"ର ପୀଡ଼ନରେ ଅଧୀର ହୋଇପଡ଼େ । ଏହି ଆର୍ତ୍ତିର ଭାର ବହନ କରିବାକୁ ଅସମର୍ଥ ହୋଇ ହୃଦୟ ତାହାର ନର୍ମସଖୀରୂପିଣୀ ଲଳିତକଳାର ସହାୟତା ଲୋଡ଼େ । "ଗୋଡ଼ ଖସି ଖେଦ ହେବାର ଦରଦ ଯିବାର ଉପାୟ" କେବଳ ଦରଦୀ ପ୍ରାଣସଙ୍ଗିନୀ ଛଡ଼ା କିଏ କହି ପାରିବ ? ଅଉ କିଏ ସେହି ଆନନ୍ଦବ୍ରହ୍ମଙ୍କର ସନ୍ଧାନ ଦେଇ ତାହାର ବଳି ପଡ଼ିଥିବା ହୃଦୟ-ବ୍ୟଥାର ଆଶୁ ଉପଶମ ପାଇଁ ବଦ୍ଧପରିକର ହୋଇ ତାହାର ପାଖରେ ଛିଡ଼ା ହେବ ?

ଗୋଟିଏ ଉଦାହରଣର ସାହାଯ୍ୟରେ ତାହା ବିଶଦ କରିବାର ଚେଷ୍ଟା କରାଯାଉ। ଗୋଟିଏ 'ପଦ୍ମ' ଦେଖି ଜଣେ ଉଦ୍ଭିଦ୍‌ବିଦ୍ୟାବିତ୍ ତତ୍ତ୍ୱ ପଦ୍ମବିଷୟରେ ନାନା ଗବେଷଣାମୂଳକ ଜ୍ଞାତବ୍ୟ ବିଷୟ ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବେ। ପଦ୍ମ ଏକପାଖୁଡ଼ାବିଶିଷ୍ଟ ବା ବହୁପାଖୁଡ଼ାବିଶିଷ୍ଟ ଶ୍ରେଣୀଭୁକ୍ତ (monocotyleden କି dio-cotyleden)—ଏ ତର୍କର ମୂଲ୍ୟ ସାଧାରଣ ମନୁଷ୍ୟର ଦୈନନ୍ଦିନ ଜୀବନରେ କିଛି ନାହିଁ—କେବଳ ଜ୍ଞାନପିପାସୁର ଆଦରଣୀୟ ହୋଇଥାଏ। ପୁଣି କବିରାଜଶାସ୍ତ୍ରଜ୍ଞ ଭିଷକ୍‌ରତ୍ନମାନେ ପଦ୍ମମଧୁର ଉପକାରିତା (ବିଶେଷତଃ ନକ୍ତାନ୍ଧତ୍ୱର ଅମୋଘ ଔଷଧରୂପରେ) ସ୍ୱୀକାର କରନ୍ତି—ତେଣୁ ପଦ୍ମମଧୁର ଗୋଟାଏ ମୂଲ୍ୟ ସେମାନଙ୍କ ପାଖରେ ନିଶ୍ଚୟ ଅଛି। କିନ୍ତୁ "କୋଟି ଲାବଣ୍ୟନିଧି ରେ ପଦ୍ମ ତୁହି" ମଧୁସୂଦନଙ୍କର ଏହି ହୃଦୟ-ନିଃସୃତ ସମ୍ବୋଧନଟିର ହୃଦ୍ୟତା ଯେପରି ହୃଦୟକୁ ସ୍ପର୍ଶ କରେ ସେପରି ଅନ୍ୟତ୍ର ଅସମ୍ଭବ। ପଙ୍କରୁ ଜାତ ହୋଇ ପଙ୍କଜ ପଙ୍କମୟ ଦେହଧାରୀ ମାନବାତ୍ମାର କେତେ ଆତ୍ମୀୟ, ତାହା କବିଙ୍କୁ ଗୋଚର ଓ କବିହିଁ ସେହି ସୁପ୍ତ ଆତ୍ମୀୟତାବୋଧକୁ ଜାଗ୍ରତ କରି ମାନବହୃଦୟରେ ଗୋଟାଏ ଆନନ୍ଦର ତରଙ୍ଗ ଖେଳାଇ ଦେଲେ। ଆନନ୍ଦର ସନ୍ତାନ ମନୁଷ୍ୟ ଏ ନିରାନନ୍ଦମୟ ପରିସ୍ଥିତି ମଧ୍ୟରେ ନିରାନନ୍ଦମୟ ବାତାବରଣରେ ମୁମୂର୍ଷୁପ୍ରାୟ ପଡ଼ି ରହିଥିବାବେଳେ ଏହି ଆନନ୍ଦତରଙ୍ଗଟି ଯେକି ଶୀତ-ସ୍ନିଗ୍ଧ ଚନ୍ଦନ ଲେପନ କରି ତାହାର ତାପିତ ହୃଦୟକୁ ଶୀତଳ କରେ ତାହା ସାହିତ୍ୟ-ରସିକଙ୍କୁ ଜଣା।

ରବୀନ୍ଦ୍ରନାଥ ଗାଇଲେ—

"କୃଷ୍ଣ ଚୂଡ଼ାର ପୁଷ୍ପପାଗଲ ଶାଖେ,
ଅଜ କେ କେବଲ ବଉ-କଥା-କଓ ଡାକେ"।

କୃଷ୍ଣଚୂଡ଼ାର ଯେ ସମ୍ବାଦ ବହନ କରି ଆମ୍ଭମାନଙ୍କ ହୃଦୟ ସମୀପରେ ଉପସ୍ଥିତ ହେଲେ, କବି ଛଡ଼ା ଅନ୍ୟ କେହି ସେ ସମ୍ବାଦ

ବର୍ଣ୍ଣନ କରିବାର ସାମର୍ଥ୍ୟ ଅର୍ଜନ କରି ପାରେ କି ? ଅଜସ୍ର ପୁଷ୍ପସମ୍ଭାର ଯୋଗେ କୃଷ୍ଣଚୂଡ଼ା ଆଜି ସୌନ୍ଦର୍ଯ୍ୟାଭିବ୍ୟକ୍ତି-ଦଶାରେ ବାଉଳି (ପାଗଳ) ହୋଇ ପଡ଼ିଛି । କବି ସେହି ତାର ଉନ୍ମତ୍ତତାକୁ ସୌନ୍ଦର୍ଯ୍ୟର ଭାଷା ପ୍ରଦାନ କରି କହିଲେ କୃଷ୍ଣଚୂଡ଼ାର ଶାଖା ପ୍ରଶାଖା ଆଜି "ପୁଷ୍ପ ପାଗଳ" ହୋଇ ପଡ଼ିଛି । ଶବ୍ଦଭେଦୀ କବି ଗୋଟିାଏ ମାତ୍ର ଶବ୍ଦବିନ୍ୟାସରେହିଁ ତାହାର ଅନ୍ତର୍ଗୂଢ଼ ସୌନ୍ଦର୍ଯ୍ୟକୁ ପ୍ରକାଶ କରିଦେଲେ । ଏତାଦୃଶ ଅମୋଘ ଶବ୍ଦଭେଦୀ ପ୍ରୟୋଗରେ ସମସ୍ତେ କଅଣ ସିଦ୍ଧହସ୍ତ, ନା ଅବ୍ୟର୍ଥ ସନ୍ଧାନୀ ? ସେହି ପୁଣି ଅନ୍ୟତ୍ର କହିଲେ "ଆଲୋକ ପରଶେ ମରମେ ମରିଯା, ହେର ଗୋ ଶେଫାଳି ପଡ଼ିଛେ ଝରିଯା, କୋନ ମତେ ଆଛେ ପରାନ ଧରିଅ, କାମିନୀ ଶିଥିଲ ସାଜେ— ବେଲ ହଲ ମରି ଲାଜେ । ଶରମ-ଜଡ଼ିତ ଚରଣେ କେମନେ ଯାଇବ ପଥେର ମାଝେ" ଇତ୍ୟାଦି । ଏଠାରେ କବିଙ୍କର ଶଂସିତନାୟିକା ବା ଅଭିସାରିକା ଠିକ ଅସୂର୍ଯ୍ୟମ୍ପଶ୍ୟା ଅବଗୁଣ୍ଠନବତୀ ପ୍ରାଚୀନା ନ ହେଲେହେଁ ସରମ-ସଙ୍କୋଚଗୃହନିଗଡ଼ରୁ ପୂର୍ଣ୍ଣମୁକ୍ତା ଓ ଲଜ୍ଜାରୂପ ମହାନର୍ଥନିବୃତ୍ତା ଗୋପୀବ୍ରିଲିବ୍ଧତନ୍ତ୍ର ଅତି-ଆଧୁନିକା ମଧ୍ୟ ନ ଥିଲେ । ସୁତରାଂ ନବାଗତାଙ୍କର ଦୃଷ୍ଟିପଥରେ ପଡ଼ଯାଇ ସେ କପରି ଲଜ୍ଜାକଣ୍ଟ ଲାଜକୁଳତି ପରି ଲାଜସରମରେ ଝାଉଁଳି ପଡ଼ିଲେ ଭଳ ହୋଇଗଲେ ଏବଂ ସରମଜଡ଼ିତଚରଣା ଓ ଶିଥିଳତବେଶଭୂଷା ସେହି କାମିନୀର ତତ୍-କାଳୀନ ହୃଦୟବୃତ୍ତିଟି କବି କପରି କୌଶଳରେ ପ୍ରକାଶ କରିବାର ଚେଷ୍ଟା କରିଛନ୍ତି, ତାହାହିଁ ପ୍ରଣିଧାନଯୋଗ୍ୟ । ଶେଫାଳୀ ଓ କାମିନୀପୁଷ୍ପର ତତ୍କାଳୀନ ଅବସ୍ଥା କବିଙ୍କ ଭାବର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ଭାବ ବହନ କରିବାରେ କପରି ସହାୟତା କରିଥିଲା, ତାହାହିଁ ଉପଭୋଗର ବିଷୟ । ବହିଃପ୍ରକୃତିର ସଙ୍ଗରେ ମାନବହୃଦୟର ଏକାତ୍ମବୋଧଜନିତ ମମତାକୁ କବି କି ପ୍ରାଣସ୍ପର୍ଶୀ ଭାଷାରେ, କି ଉତ୍କୃଷ୍ଟ କଳାକୌଶଳଦ୍ୱାରା ପ୍ରକାଶ କରିଅଛନ୍ତି, ତାହାହିଁ ଲକ୍ଷ୍ୟ କରିବା ଉଚିତ । ପୁରୁଣାକାଳିଆ ଭକ୍ତକବିଙ୍କ କଳାକୌଶଳରେ

ଏହିପରି ଗୋଟିଏ ଶୋଭନ ପଟାନ୍ତର ଦେଖିବାକୁ ମିଳେ। ରାଜସୁତା ସୁକେଶୀଙ୍କି ତୁଠ ଉପରେ ବସାଇ କବି ତାଙ୍କର କୁରଙ୍ଗ ନୟନଦ୍ୱୟେ ସରୋବରର ସୌନ୍ଦର୍ଯ୍ୟସୁଧା ଉପଭୋଗ କରୁଅଛନ୍ତି କାହିଁକି ? ନୀଳ ରଙ୍ଗର ଶାଢ଼ୀ ଏବଂ ତାହାର କାରୁକାର୍ଯ୍ୟମୟୀ ଧଡ଼ିର ଶୋଭା ଦେଖିବାପାଇଁ ତାଙ୍କର କଅଣ କବିଚକ୍ଷୁ ନ ଥିଲା ? ସେ ଲାବଣ୍ୟ-ବତୀଙ୍କ ଚକ୍ଷୁରେ ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖି, ସୁନ୍ଦରକୁ ସୁନ୍ଦରତର କରି ମାନବହୃଦୟର ସୌନ୍ଦର୍ଯ୍ୟକୁ ବିଶ୍ୱସୌନ୍ଦର୍ଯ୍ୟର ସୂତ୍ରରେ ଗ୍ରଥିତ କରିବାର ସୁଯୋଗ ଲୋଡ଼ୁଛନ୍ତି। ସେ ମନୁଷ୍ୟହୃଦୟ ଓ ବିଶ୍ୱହୃଦୟର ମଧ୍ୟରେ ଏକ ବିଶିଷ୍ଟ ସମ୍ବନ୍ଧସୂତ୍ର ସ୍ଥାପନର ପ୍ରୟାସୀ।

ବହିଃପ୍ରକୃତିର ସଙ୍ଗରେ ମାନବପ୍ରକୃତିର ଏହି ସମ୍ବନ୍ଧାତ୍ମକ ନିଗୂଢ଼ ରହସ୍ୟ ମହାକବି କାଳିଦାସଙ୍କର ଶକୁନ୍ତଳା ନାଟକରେ ଯେପରି ପରିସ୍ଫୁଟ ହୋଇଅଛି, ଅନ୍ୟତ୍ର ତାହା ବିରଳ। ଉତ୍କଳ-ପ୍ରକୃତିଲକ୍ଷ୍ମୀଙ୍କ ପଦ୍ମସୁରେହିତ ରାଧାନାଥଙ୍କ କଥା ସ୍ୱତନ୍ତ୍ର। ସେ ପ୍ରକୃତିରାଣୀଙ୍କ ନିର୍ମଞ୍ଚନରେ ଯେପରି ଆତ୍ମହରା ହୋଇ ପଡ଼ନ୍ତି, ସେପରି ସୌନ୍ଦର୍ଯ୍ୟ-ପୂରୋଧା କବି ଉତ୍କଳରେ ବିରଳ। ସେ ତାଙ୍କର ତଥାକଥିତ ମହାଯାତ୍ରା ନାମକ ମହାକାବ୍ୟରେ ମଧ୍ୟ ପ୍ରକୃତିର ଶୀର୍ଣ୍ଣନାକୁ ମୁଖ୍ୟ ଏବଂ ଚରିତ୍ର-ଚିତ୍ରଣକୁ ଏକାବେଳକେ ଗୌଣ କରି ଦେଇଥିବାରୁ ଆଧୁନିକ ସମା-ଲୋଚନା-ବିଭ୍ରାଟ ପାଇଁ ସେ ଅଂଶତଃ ଦାୟୀ। ଅନେକ ସମାଲୋଚକ ନାସିକା କୁଞ୍ଚନ କରି ବସିଲେଣି ଯେ ମହାକାବ୍ୟର ନାୟକ ଯୁଧିଷ୍ଠିରଙ୍କ ଚରିତଚିତ୍ରଣରେ କବି ଭାରି ଉଦାସୀନ ହୋଇ ପଡ଼ିଛନ୍ତି—ତାହାର କାରଣ ତାଙ୍କର ଅସ୍ଥିମଜ୍ଜାଗତ ସୌନ୍ଦର୍ଯ୍ୟପିପାସା। ଗୋଟିଏ ପ୍ରାକୃତିକ ଦୃଶ୍ୟ ତାଙ୍କର ନୟନପଥରେ ପଥିକ ହେଲାକ୍ଷଣି ସେ ତନ୍ମୟ ହୋଇ ଯାଉଥିଲେ। ସାତକୋଶିଆ ଗଣ୍ଡର ଭୀମକାନ୍ତ ମୂର୍ତ୍ତି ଦେଖି ଯୁଧିଷ୍ଠିରଙ୍କୁ ପୁଣି ଥରେ ଅଜ୍ଞାତବାସକୁ ପଠାଇଦେବାର ବ୍ୟବସ୍ଥା କରି, ଲାଗିଗଲେ ପ୍ରକୃତିରାଣୀଙ୍କ ନିର୍ମଞ୍ଚନରେ ଦୂରରୁ ମୟୂରଟିଏ ଦେଖିଲେ ତ କଳନା-ସ୍ୟନ୍ଦନରେ ଆରୋହଣ କରି ଦଣ୍ଡକାରଣ୍ୟର ମୈଥିଳୀପାଳିତ କେକୀ

ବଂଶଧରଙ୍କ ସମାଜରେ ଆସି ହାଜର । ନିଦଶଗ୍ରୀବନିକଷ ନୈକଷେୟ ବଳୀ ଲଙ୍କାପତି—ଅଗ୍ରଜଙ୍କ କୋଦଣ୍ଡଟଙ୍କାର ଶୁଣି ଆମ୍ହସ । ଏଟା ହେଲା କବିଙ୍କର ଜନ୍ମଗତ ଅନ୍ତଦୁରବେଗ୍ୟ ବ୍ୟାଧି—ଏହା କଅଣ ସହଜରେ ଛଡ଼ିବା ମାନୁଛି ? ବ୍ରହ୍ମା "ନ ବୁଝିଲେ ଏକଥା ହେଲେ ମର୍ମ ଅଦ୍ଭୁତ" ! ପୁଣି ବ୍ରହ୍ମା ବଳିବଳେଇଲେ ବେଦ । ଅଜକାଳ ପୁଣି ବ୍ରହ୍ମାଙ୍କୁ ବଳିବଳେଇବାକୁ ଡର ସହୁ ନାହିଁ, ଖାଲି ଏଁ କଲେନ୍ହିଁ ପଞ୍ଚମ ବେଦ । ସୁତରାଂ କବିଙ୍କ ଶଂସିତ କାବ୍ୟକୁ ମହାକାବ୍ୟ ବୋଲି ଧରିନେଇ ମହାକାବ୍ୟର ଲକ୍ଷଣମାନ ଖୋଜା ପଡ଼ିଲା । ଚରିତଚିତ୍ରଣର ଅଭାବବଶତଃ ପୁଣି ତାହା ଯେ ମହାକାବ୍ୟପଦବାଚ୍ୟ ହୋଇ ନ ପାରେ ତାହାହିଁ ସାବ୍ୟସ୍ତ ହେଲା । ଏକହିଁ ଶାମୁଖବୁହିଁ ତାରିବା ଓ ମାରିବା ପାଇଁ ବ୍ରହ୍ମାସ୍ତ୍ରଯୁଗଳର ଯୁଗପତ୍ ପ୍ରୟୋଗ ଦେଖି କବିଙ୍କର ପ୍ଲୀହା ପାଣି । ଏଟା ହେଲା ସର୍ପରେ ରଜ୍ଜୁଭ୍ରମ । ଯଦି କାବ୍ୟଟି ମହାକାବ୍ୟଲକ୍ଷଣାକ୍ରାନ୍ତ ନ ହେଲା, ତେବେ ତାକୁ ମହାକାବ୍ୟ-କୋଠିରେ ସ୍ଥାନ ଦେବାକୁ କହୁଛି କିଏ ? ଯେବେ ଭ୍ରମବଶତଃ କେହି ତାହାକୁ ମହାକାବ୍ୟ ଆଖ୍ୟା ଦିଏ, ସେଥିପାଇଁ କବିଙ୍କର ଦୋଷ ବା କଅଣ ? ମହାକାବ୍ୟ ନ ହେଲେ କଅଣ ଏଭଳି କାବ୍ୟଗ୍ରନ୍ଥଟିକୁ ଅପାଂକ୍ତେୟ କରି ରଖିବାକୁ ହେବ । "ଅଲଂବିଦ୍ୟା ଭୟଙ୍କରୀ" । ପୁଣି ସଙ୍କୀର୍ଣ୍ଣଦୃଷ୍ଟି ଯେବେ ବିଚାରପନ୍ଥର ଆସନ ଅଳଙ୍କୃତ କରି ବସିଲେ ହିତେ ବିପରୀତ ଅବଶ୍ୟମ୍ଭାବୀ । ପାଶ୍ଚାତ୍ୟଦେଶର କବି Wordesworth's Prelude; Shelly's Prometheus Unbound Byron's Childe Harold ପ୍ରଭୃତି ନାନା ସୁଦୀର୍ଘ କାବ୍ୟଗ୍ରନ୍ଥ ତ ମହାକାବ୍ୟ (Epic) ନୁହନ୍ତି । କାବ୍ୟଜଗତରେ ସେମାନଙ୍କର ସ୍ଥାନ ଅଛି ଓ ମର୍ଯ୍ୟାଦା ମଧ୍ୟ ଅଛି । ସେହିପରି ମହାକାବ୍ୟ ଲକ୍ଷଣାକ୍ରାନ୍ତ ନ ହେଲେହେଁ ମହାଯାତ୍ରାର ସ୍ଥାନ କାବ୍ୟଜଗତରେ ଖୁବ ନୀଚ ନୁହେଁ ।

କବି ସୌନ୍ଦର୍ଯ୍ୟର ଦ୍ରଷ୍ଟା ଓ ସ୍ରଷ୍ଟା । ସୌନ୍ଦର୍ଯ୍ୟ ନିଜେ ଉପଭୋଗ କରି ତାକୁ ଅନ୍ୟର ଉପଭୋଗ୍ୟ କରିବାର ଉପାୟ କବିକଳାବିତ୍‌ହିଁ

ଜାଣେ । ଆନନ୍ଦବ୍ରହ୍ମର ସେବା କରି କୈବଲ୍ୟକଣିକା ବିତରଣହିଁ କବିର କାର୍ଯ୍ୟ । ମହାଯାତ୍ରାର କବି କଅଣ ସେ ଭାବରେ କିଛି ହେଲେ କିଛି କରି ନାହାନ୍ତି ? ଯଦି କରିଥାଆନ୍ତି, ତେବେ ସହାନୁଭୂତିର ଦୃଷ୍ଟିରେ ତାହାର ମୂଲ୍ୟ ନିର୍ଦ୍ଧାରଣ କରିବାହିଁ ସମାଲୋଚନାର କାର୍ଯ୍ୟ ।

ମହାଯାତ୍ରା ଗୋଟିଏ ଅଭିନବ ସୃଷ୍ଟି । ତାକୁ ଶ୍ରେଣୀଭୁକ୍ତ କରି ନ ପାରିବା ଦୋଷରୁ କଅଣ ତାକୁ ପରିତ୍ୟାଗ କରିବା ସମୀଚୀନ ହେବ ? କାବ୍ୟଜଗତରେ ବର୍ଣ୍ଣସଙ୍କରର କଅଣ ସୂଚ୍ୟଗ୍ରପରିମିତ ସ୍ଥାନ ନାହିଁ ? କୌଳିନ୍ୟାଭିମାନୀ ଇନ୍ଦ୍ରପ୍ରସ୍ଥର ରାଜସିଂହାସନ ତଳେ ଯଦି ବିଦୁରଙ୍କର ଗୋଟିଏ ସମ୍ମାନସୂଚକ ଆଦରଣୀୟ ସ୍ଥାନ ନିର୍ଦ୍ଦିଷ୍ଟ ଥାଇପାରେ, ତେବେ ଆଧୁନିକ ବର୍ଣ୍ଣସଙ୍କରସଙ୍କୁଳ ପ୍ରଗତିପନ୍ଥୀର ଯୁଗରେ ମହାଯାତ୍ରାରୂପ ବର୍ଣ୍ଣସଙ୍କର କାବ୍ୟଗ୍ରନ୍ଥର ସ୍ଥାନ ନ ହେବ କାହିଁକି ? ସହାନୁଭୂତିକୁ କେନ୍ଦ୍ରକରି ସମାଲୋଚନା ସମୀକ୍ଷା ଯେତେ ଇଚ୍ଛା ତେତେ ବ୍ୟାସାର୍ଦ୍ଧନେଇ ସୁଦୀର୍ଘ ବୃତ୍ତରଚନାପୂର୍ବକ ନିଜର କଳ୍ପନାପରିଧିର ପରିସର ବଢ଼ାଇ ପାରନ୍ତି, ମାତ୍ର କେନ୍ଦ୍ରମୁକ୍ତ ହୋଇ ଲକ୍ଷ୍ୟଚ୍ୟୁତ ଓ କକ୍ଷଭ୍ରଷ୍ଟ ହେବା ଉଚିତ କି ? ଗ୍ରହ ଉପଗ୍ରହମାନଙ୍କର ଯେପରି ସ୍ୱ ସ୍ୱ ସ୍ୱତନ୍ତ୍ର କକ୍ଷ ଅଛି, ସେହିପରି କବିପ୍ରତିଭାର ମଧ୍ୟ ସ୍ୱତନ୍ତ୍ର କକ୍ଷ ଅଛି ଓ ସ୍ୱତନ୍ତ୍ର ବିଳାସକ୍ଷେତ୍ର ମଧ୍ୟ ଅଛି, ତାହା ଭୁଲିଗଲେ ସମାଲୋଚକ ବିଭ୍ରାଟରେ ପଡ଼ନ୍ତି ।

ସହାନୁଭୂତିବିହୀନ ଚକ୍ଷୁରେ ଦେଖିଲେ ଗୁଣ ତ ଆଖିରେ ପଡ଼ିବ ନାହିଁ, କେବଳ ଦୋଷଦୃଷ୍ଟିହିଁ ସାର ହେବ । ଗୁଣସଙ୍ଗରେ ଦୋଷ ନିଶ୍ଚୟ ଥିବ । ବିଦ୍ୱେଷପଟଳାବୃତ ନୟନରେ ଦେଖିଲେ ଦୋଷ ନ ଥିଲେ ମଧ୍ୟ ଦୋଷାରୋପ କରିବା କିଛି କଠିନ ହେବ ନାହିଁ । ପୁଣି ସହାନୁଭୂତି ନ ଥିଲେ କବିଙ୍କର ଅଭିନବତ୍ୱ ଓ ମୌଳିକତ୍ୱ ସନ୍ଦର୍ଶନରେ ପରାଙ୍ମୁଖ ହେଲେ କବିଙ୍କ ପ୍ରତିଭାର ମହତ୍ତ୍ୱ ହୃଦୟଙ୍ଗମ ହେବ କି ? ତେଣୁ ପାଶ୍ଚାତ୍ୟଖଣ୍ଡରେ ସହାନୁଭୂତି ଉପରେହିଁ ସମାଲୋଚନା ପ୍ରତିଷ୍ଠିତ ହୁଏ । ସୁତରାଂ ମହାଯାତ୍ରା ମହାକାବ୍ୟ ନୁହେଁ ଏହା କହି କ୍ଷାନ୍ତ ହେଲେ ସମାଲୋଚକର କର୍ତ୍ତବ୍ୟ ଶେଷ ହେଲା କି ? ମହାଯାତ୍ରା ତେବେ କଅଣ ଓ

ସେଥିରେ କାବ୍ୟକଳାସୁଲଭ ଶିଳ୍ପଗୁଣଟି କିଛି ଦେଖିଲେ ଅଛି କି ନା ? ଏହା ବିଚାର କରି ଦେଖିବା ଉଚିତ ନୁହେଁ କି ?

ଉଲ୍ଲିଖିତ ଆଲୋଚନାରୁ ଏହାହିଁ ବୁଝାଗଲା ଯେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ-ବ୍ୟାପିନୀ ପ୍ରାଣଶକ୍ତିର ଅନୁଶୀଳନ କରି ଜଡ଼ବିଜ୍ଞାନ, ମନୋବିଜ୍ଞାନ ଏବଂ ଅଧ୍ୟାତ୍ମବିଜ୍ଞାନ ଯାହା ଯାହା କରିଅଛନ୍ତି, ସେଥିରେ ମନୁଷ୍ୟର ଭୌତିକ, ମାନସିକ ଓ ଆଧ୍ୟାତ୍ମିକ ପ୍ରଭୂତକଲ୍ୟାଣ ସମ୍ପାଦିତ ହୋଇଥାଏ; କିନ୍ତୁ ମନୁଷ୍ୟର ହୃଦୟ ବା ଆତ୍ମା ( Spiritual nature ) ଉପରେ ସେମାନଙ୍କର ପ୍ରଭାବ ଖୁବ କମ। ସେମାନେ ହୃଦୟକୁ ସରସ ଓ ଉର୍ବର କରି ପାରନ୍ତି ନାହିଁ। ଏମନ୍ତ କି ଧର୍ମ ମଧ୍ୟ ସଙ୍କୀର୍ଣ୍ଣ ସାମ୍ପ୍ରଦାୟିକତ୍ୱରେ ଏପରି ଜଡ଼ିତ ହୋଇଯାଇଛି ଏବଂ ଏପରି ନୀରସ ଶୁଷ୍କ ଅନୁଷ୍ଠାନ-ବହୁଳ ଏବଂ ଏପରି ହୀନ କୁସଂସ୍କାରଜାଲରେ ପଙ୍ଗୁ ହୋଇପଡ଼ିଛି ଯେ ତାହାର ନିଜ ରକ୍ଷଣ ଅସମ୍ଭବ। ଧର୍ମରେ ଉଦାରତା ନାହିଁ, ମହାପ୍ରାଣତା ନାହିଁ; ସ୍ୱାର୍ଥତ୍ୟାଗର ଲେଶମାତ୍ର ନାହିଁ—ଅଛି କେବଳ କୃତ୍ରିମତାର ସୁବିଧାବାଦ ଏବଂ ସଙ୍କୀର୍ଣ୍ଣତା, ଯାହାକୁ ସେମାନେ ନିଷ୍ଠା ବୋଲି ବରଣ କରି ଆତ୍ମପ୍ରବଞ୍ଚନାର ଦ୍ୱାର ଉନ୍ମୁକ୍ତ କରି ରଖନ୍ତି! ଆତ୍ମପ୍ରବଞ୍ଚନା ଧର୍ମନାମରେ ଯେପରି ସହଜ ହୋଇପଡ଼େ, ଅନ୍ୟତ୍ର ତାହା ବିରଳ। ଧର୍ମ-ଧ୍ୱଜୀଙ୍କର ହୃଦୟକ୍ଷେତ୍ର ଆତ୍ମପ୍ରବଞ୍ଚନାରୂପ ଅପବୃକ୍ଷର ଉର୍ବରକ୍ଷେତ୍ର ହୋଇଉଠେ। ସୁତରାଂ ଲୋକେ ଯାହାକୁ ଧର୍ମ ବୋଲି ପ୍ରଚାର କରି ବୁଲନ୍ତି ତାହା କପଟତାର ନାମମାତ୍ର। ତିଳକ-ଚିତା କାଟିବା ଦ୍ୱାରା ଭକ୍ତିବିଶ୍ୱାସୀ ଜନତା ଚିତା କାଟିବାର ପଥ ସୁଗମ ହୋଇପଡ଼େ।

ତେଣୁ ଅନନ୍ୟୋପାୟ ହୋଇ ଲଳିତକଳାର ଆଶ୍ରୟ ନେଉଛନ୍ତି ଶ୍ରେୟସ୍କର। କିନ୍ତୁ ସେଦିନ କେତେକ ପ୍ରଗତିପନ୍ଥୀ ପାଶ୍ଚାତ୍ୟଦେଶର କଳାବିତ୍ ମନୀଷୀମାନେ ଅକାଟ୍ୟ ଯୁକ୍ତିର ସହିତ ଦେଖାଇ ଅଛନ୍ତି ଯେ ଲଳିତକଳା ମଧ୍ୟ ଭଳି ଗତାନୁଗତିକ ହୋଇ ପଡ଼ିବାରୁ ଅତି କୃତ୍ରିମ, ନୀରସ ଓ ପ୍ରାଣହୀନ ହୋଇ ଯାଉଛି। ହୃଦୟକୁ ସ୍ପର୍ଶ କରିବା ଓ

ରଞ୍ଜନା ବୃତ୍ତିଗୁଡ଼ିକୁ ସଜୀବ ରଖିବା ତାହା ପକ୍ଷରେ ଦୁଃସାଧ ହୋଇ ଉଠିଛି । ସେମାନେ ଚିତ୍ରକଳାକୁ ଲକ୍ଷ୍ୟ କରି ଏହି ସମାଲୋଚନାଟି ବାଢ଼ି ଅଛନ୍ତି । ଶିଳ୍ପୀର ବିକାଶୋନ୍ମୁଖ ମନୋବୃତ୍ତିକୁ ଲକ୍ଷ୍ୟ ନ କରି ଯେଉଁ ଚିରାଚରିତ ପ୍ରାଚୀନ ପଦ୍ଧତିମାନ ଶିଳ୍ପୀଉପରେ ଲଦି ଦିଆଯାଏ, ସେଥିରେ ହୃଦୟକୁ ସ୍ପର୍ଶ କରିବା ଭଳି କିଛିହିଁ ନ ଥାଏ । କେବଳ ପୁରାତନର ନୀରସ, କସ୍ରତ ଓ ଅନ୍ଧ ଅନୁକରଣକୁ କଳାତକଳା ଆଖ୍ୟା ଦେଇ ଲାଭ କଅଣ ? ଯଦି ଶିଳ୍ପୀର ହୃଦୟ ନିଜ ଶିଳ୍ପସୃଷ୍ଟିର ମାଧୁରୀରେ ଆପ୍ଳୁତ ହୋଇ ନ ଉଠେ, ତେବେ ସେ କିପରି ଅନ୍ୟର ହୃଦୟକୁ ସ୍ପର୍ଶ କରି ସେଥିରେ ଆନନ୍ଦ ସଞ୍ଚାର କରାଇ ପାରିବ ? ତାହା ଯଦି ନ ହୁଏ, କଳା ଲକ୍ଷ୍ୟଭ୍ରଷ୍ଟ ହେଲା ନାହିଁ କି ?

ତେଣୁ ସେମାନେ ସଙ୍ଗୀତ ଓ ନୃତ୍ୟକୁ ଆତ୍ମୋତ୍କର୍ଷର ଏକମାତ୍ର ଉପାୟ ବୋଲି ଏକ ନିର୍ଦ୍ଧାରଣ ଉପସ୍ଥାପିତ କରିଅଛନ୍ତି । ତେବେ ସେମାନେ ପରମ୍ପରାଗତ ସନାତନ ପଦ୍ଧତିର ଜଟିଳ-କୁଟିଳ-ତାଳ-ମାନାଶ୍ରିତ ସଙ୍ଗୀତକୁ ଭାରି କୃତ୍ରିମ ବୋଲି ବର୍ଜନ କରିବାର ପକ୍ଷପାତୀ । ସେହିପରି ନୃତ୍ୟକଳା ମଧ୍ୟ ଗତାନୁଗତିକତାର କଣ୍ଟକ ନିଗଡ଼ରୁ ମୁକ୍ତ ନ ହେଲେ ପ୍ରାଣସ୍ପର୍ଶୀ ହୁଏ ନାହିଁ । ନୃତ୍ୟ କେବଳ ଅଙ୍ଗପ୍ରତ୍ୟଙ୍ଗମାନଙ୍କର ଲଳିତଭଙ୍ଗୀ ହେଲେ ଗୋଟିଏ ଶାରୀରିକ ବ୍ୟାୟାମ ବା ଅନୁଶୀଳନ ମାତ୍ର ହେବ ଓ ସଙ୍ଗୀତ କେବଳ କଣ୍ଠସାଧନର ପ୍ରୟାସ ମାତ୍ର ହୋଇ ପ୍ରାଣକୁ ସ୍ପର୍ଶ କରିବ ନାହିଁ । ଶିଶୁ ଯେପରି ଆନନ୍ଦର ପ୍ରାଚୁର୍ଯ୍ୟରେ ଅଙ୍ଗଭଙ୍ଗୀ କରି ନାଚିଉଠେ ବା ଗାଇ ବୁଲେ, ସେହି ଅତି ସ୍ୱାଭାବିକ-ସୁନ୍ଦର ସ୍ୱତଃସ୍ଫୂର୍ତ୍ତି ନୃତ୍ୟଗୀତହିଁ ପ୍ରାଣସ୍ପର୍ଶୀ ହୋଇଥାଏ । ଆନନ୍ଦସିନ୍ଧୁ ଉଚ୍ଛୁଳି ଉଠେ; ହୃଦୟ ଆପେ ଆପେ ନାଚି ଉଠେ ଏବଂ ହୃଦୟର ଗଭୀରତମ ପ୍ରଦେଶରୁ ସଙ୍ଗୀତ ସ୍ୱତଃ ଝରିପଡ଼େ । ସେହି ନିସର୍ଗସୁନ୍ଦର ସ୍ୱତଃସ୍ଫୂର୍ତ୍ତି ନୃତ୍ୟଗୀତହିଁ ଆତ୍ମୋନ୍ନତି ବା ଆତ୍ମାନୁଶୀଳନର ଭାରି ଅନୁକୂଳ ବୋଲି ସେମାନେ ନିର୍ଦ୍ଧାରଣ କରିଅଛନ୍ତି ।

କାରଣ ସନାତନପନ୍ଥୀ ସଙ୍ଗୀତଚର୍ଚ୍ଚା ତଥା ନୃତ୍ୟକଳାର ଅନୁଶୀଳନ ଏପରି ଜଟିଳ ଯେ ଏହାକୁ ଏକ ପ୍ରକାର କସରତ କହିଲେ ଚଳେ । ପ୍ରାଣସ୍ପର୍ଶୀ ଚେଷ୍ଟାକୁ ଗୌଣ କରି, ସ୍ଥଳବିଶେଷରେ ଏକାବେଳକେ ଖର୍ବ କରି ଲଳିତକଳାନାମରେ ଏପରି ଗାନ୍ଧର୍ବବିଦ୍ୟାର ଅନୁଶୀଳନ ପଣ୍ଡଶ୍ରମ ମାତ୍ର ହୋଇପଡ଼େ । ନୃତ୍ୟ କେବଳ ଶାରୀରିକ ବ୍ୟାୟାମ ଓ ସଙ୍ଗୀତ କେବଳ ଦୁରୂହ କଣ୍ଠସାଧନର ମଧ୍ୟ ଦେଇ ଗୋଟିଏ ନୀରସ ବିଦ୍ୟାଭ୍ୟାସର ରୂପ ଧାରଣ କରେ ।

କିନ୍ତୁ ଯେଉଁ ଲଳିତକଳା ଆନନ୍ଦର ନିର୍ଝରିଣୀରୂପେ ହୃଦୟକୁ ସ୍ପର୍ଶ କରି ସରସ ଓ ସଜୀବ ରଖେ ତାହାହିଁ ଅନୁଶୀଳନୀୟ । ଆମ୍ଭମାନଙ୍କ ଠିକ ବିପରୀତ ଦିଗରେ ଭୂପୃଷ୍ଠୋପରି ବିଦ୍ୟମାନ ମାର୍କିନ ଦେଶର ଅନେକ ପଣ୍ଡିତ ସ୍ୱତଃସ୍ଫୂର୍ତ୍ତି କୀର୍ତ୍ତନ-ନର୍ତ୍ତନର ଭାରି ପକ୍ଷପାତୀ ହୋଇଥିବାର ଦେଖି ଆମ୍ଭମାନଙ୍କ ଦେଶରେ ଅବହମାନକାଳରୁ ପ୍ରଚଳିତ ଓ ପରମ୍ପରାଗତ କୀର୍ତ୍ତନ-ନର୍ତ୍ତନର କଥା ମୋ ମନରେ ଉଦିତ ହେବାରୁ ମୁଁ ନିଜକୁ ଭାରି ଗୌରବାନ୍ୱିତ ମନେ କଲି । କିନ୍ତୁ ଆମ ଦେଶର ଲୋକେ ବିଶେଷତଃ ପାଶ୍ଚାତ୍ୟ ଶିକ୍ଷାଦୃପ୍ତ ଦେଶୀ ସାହେବମାନେ ମାର୍କିନ ଦେଶର ପଣ୍ଡିତଙ୍କ ଏ ମତକୁ କପରି ଭାବରେ ଗ୍ରହଣ କରିବେ ଭାବି ସ୍ଥିର କରି ପାରୁ ନାହିଁ । ଏ ନିର୍ଦ୍ଧାରଣଟି ବିଶ୍ୱକଳାବିତ୍‌ମାନଙ୍କର ସଭାରେ ଉପସ୍ଥାପିତ, ଆଦୃତ ଓ ଗୃହୀତ ହୋଇଥିବାର ପ୍ରକାଶ । ଏହି ସ୍ୱଭାବସୁନ୍ଦର ସ୍ୱତଃସ୍ଫୂର୍ତ୍ତି ନର୍ତ୍ତନକୀର୍ତ୍ତନ ଯେ ଆତ୍ମାନୁଶୀଳନର ଏକମାତ୍ର ପ୍ରକୃଷ୍ଟ ପନ୍ଥା, ତାହା ଆର୍ଯ୍ୟଭାରତରେ ଅବହମାନକାଳରୁ ନାନା ଭାଗ୍ୟବିପର୍ଯ୍ୟୟର ମଧ୍ୟ ଦେଇ ତଜ୍ଜନିର୍ଘୋଷରେ ଘୋଷଣା କରି ଆସୁଛି । କେତେ କେତେ ମହାପୁରୁଷ ଓ କ୍ଷଣଜନ୍ମା ସାଧକପ୍ରବର ଏହି କୀର୍ତ୍ତନନର୍ତ୍ତନଲୀଳାର ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ ପ୍ରଚାର କରିବାପାଇଁ ଅବତାର ଗ୍ରହଣ କରିଅଛନ୍ତି, ତାହାର କଳନା କରିବା କଠିନ । ଏହାହିଁ ଆର୍ଯ୍ୟଭାରତର ବିଶ୍ୱ-କଲ୍ୟାଣ-ପୀଠରେ ସର୍ବଶ୍ରେଷ୍ଠ ଅବଦାନ । କାବ୍ୟ, ସଙ୍ଗୀତ ଓ ନୃତ୍ୟ ଏହି କଳାତ୍ରୟର ତ୍ରିବେଣୀ ସଙ୍ଗମରେ ଅବଗାହନ କରି

ମୁମୁକ୍ଷୁ ଭାରତ ଆଜିପର୍ଯ୍ୟନ୍ତ ମରୁ ମରୁ ବଞ୍ଚି ରହିଛି । ଏହା ଧୀରସ୍ଥିର ଚିତ୍ତରେ ପ୍ରଣିଧାନ କରି ବସିଲେ ଏହାର ଯାଥାର୍ଥ୍ୟ ସହଜରେ ହୃଦୟଙ୍ଗମ ହେବ । ଆର୍ଯ୍ୟଭାରତ ମନୁଷ୍ୟର ଦୈନନ୍ଦିନ ଜୀବନର ଜଞ୍ଜାଳମାଳା ମଧ୍ୟରେ ଏହି ନଶ୍ୱର-କାଞ୍ଚନ ମହୋତ୍ସବର ସ୍ଥାନ ନିରୂପଣ କରି ସାଧାରଣ ନରନାରୀର ନିପୀଡ଼ିତ, ନିଷ୍ପେଷିତ ଓ ନିସ୍ପୃହିତ ଜୀବନଯାତ୍ରାକୁ ଭାରି ସୁଗମ କରି ଦେଇ ତାହାର ଇହ ପରକାଳର ସାର୍ବଭୌମ ମଙ୍ଗଳର ପଥ ଉନ୍ମୁକ୍ତ କରି ଦେଇଅଛି । ଦୈନନ୍ଦିନ ଜୀବନର ବିଷୟାବଳୀରୂପରେ ନିମଜ୍ଜିତ ରହି ସୁଦ୍ଧା ପ୍ରତ୍ୟେକ ନରନାରୀ ତାହାର ପାରମାର୍ଥିକ ମଙ୍ଗଳର ପଥକୁ କଣ୍ଟକିତ ବା ଅଗମ୍ୟ କରି ରଖି ନାହିଁ । ଅର୍ଥ ଓ ପରମାର୍ଥ, ଜ୍ଞାନ, କର୍ମ ଓ ଭକ୍ତି, ଭୌତିକ, ନୈତିକ ଓ ଆଧ୍ୟାତ୍ମିକ ଏବଂ ନିବୃତ୍ତି ଓ ପ୍ରବୃତ୍ତି, ଗୃହ, ସମାଜ, ଦେଶ ଓ ବିଦେଶ ଓ ପରିଶେଷରେ ଦେଶକାଳର ସୀମା ଲଙ୍ଘନ କରି ନିତ୍ୟଧାମ, ଏହା ଆପାତତଃ ବିରୋଧାତ୍ମକ ହେଲେହେଁ ଆର୍ଯ୍ୟଭାରତର ଯୋଜନାରେ ଏ ସବୁର ଗୋଟିଏ ବିଚିତ୍ର ସମାବେଶ ଓ ଅନନୁଭବନୀୟ ସମନ୍ୱୟର ଚେଷ୍ଟା ହୋଇଅଛି ଏବଂ ଉକ୍ତ ଚେଷ୍ଟା ପୂର୍ଣ୍ଣଭାବରେ ସାଫଲ୍ୟମଣ୍ଡିତ ହୋଇ ଜଗତକୁ ବିସ୍ମିତ ଓ ଚକିତ କରି ଦେଇଛି । ତାହାର ଭୂରି ଭୂରି ପ୍ରମାଣ ଆଜି ମଧ୍ୟ ମିଳେ । ମହାତ୍ମା, ମହାପୁରୁଷ ଓ ମହାକବି-ମାନଙ୍କର ଆବିର୍ଭାବ ଓ ଅବତାରଗ୍ରହଣ, କେବେ ହେଲେ ନିରର୍ଥକ ହୋଇ ନାହିଁ । ଭାରତହିଁ ତାହାର ସାକ୍ଷ୍ୟ ପ୍ରଦାନ କରୁଅଛି । କିନ୍ତୁ ଦୁଃଖର ବିଷୟ, ଆଜକାଲି କେତେକ ପାଶ୍ଚାତ୍ୟସଭ୍ୟତା-ମଦିରାପାନାସକ୍ତ ନରକେଶରୀମାନେ ପ୍ରାଚୀନଭାରତର ସୁବର୍ଣ୍ଣ ମହିମା ପ୍ରତି ବୀତଶ୍ରଦ୍ଧ ହୋଇ ଓ ସନାତନପନ୍ଥୀ ଭାରତର କର୍ମଯୋଜନାକୁ ବିପୁଳ ଅବଜ୍ଞାର ଚକ୍ଷୁରେ ଦେଖି ଓ ଜୀବନର ରଙ୍ଗମଞ୍ଚରେ ଉତ୍ତାନପାଦର ଭୂମିକାରେ ଅବତୀର୍ଣ୍ଣ ହୋଇ ଯେପରି ଅଭିନୟ କରି ବସିଲେଣି, ସେଥିରେ ଭାରତର ଭବିଷ୍ୟତ୍ ଖୁବ ଉଜ୍ଜ୍ୱଳ ନୁହେ । ସ୍ୱର୍ଗକୁ ନିଶୁଣୀ ନାହିଁ, ବଡ଼ ଲୋକକୁ ଜବାବ ନାହିଁ । ଏହା ଅତୀତ ପ୍ରତି ଆଧୁନିକ ଦୃଷ୍ଟିକୋଣର ଗୋଟିଏ ନିଦର୍ଶନ ।

ପୂର୍ବରେ କହିଅଛି—ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, କାବ୍ୟ, ସଙ୍ଗୀତ, ନୃତ୍ୟ ପ୍ରଭୃତି ଏମାନ୍ତ କି ତରଙ୍ଗମାଳରେ ମଧ ଅନନ୍ଦମନ୍ଦାକିନୀର ସହସ୍ରଧାରା ଅଜସ୍ର ପ୍ରବାହିତ ହୋଇ ଅସ୍ମମାନଙ୍କ ହୃଦୟମରୁକୁ ସ୍ପର୍ଶ କରୁଅଛି। ଉପେନ୍ଦ୍ର, ଗୋପୀକୃଷ୍ଣ ପ୍ରଭୃତି ଉତ୍କଳ ବାଣୀକୁଞ୍ଜର କଳକଣ୍ଠ-କୋକିଳ-ମାନଙ୍କର ଲଳିତ ପଞ୍ଚମରାଗିଣୀ ମୁମୂର୍ଷୁ ଉତ୍କଳର ପ୍ରାଣରେ ମୃତସଞ୍ଜୀବନୀର ସୁଧାସଞ୍ଚାର କରିଦେଉଛି—ଅବହମାନକାଳରୁ ଉତ୍କଳୀୟମାନେ ସେହି ସଙ୍ଗୀତସାଗରରେ ବାରୁଣୀସ୍ନାନ କରି ନିଜକୁ ଧନ୍ୟ ମନେ କରୁଛନ୍ତି। ସେମାନଙ୍କ ପ୍ରାଣରେ ଗୋଟାଏ ଧକ୍କା ଦେଇ ଓ ସେମାନଙ୍କ ଭକ୍ତି-ପ୍ରୀତି-ଶ୍ରଦ୍ଧାଯୁକ୍ତ ହୃଦୟବୃନ୍ତକୁ ପଦଦଳିତ କରି ଜଣେ ଉଦୀୟମାନ କବି ଲେଖିଲେ—

"କଳାହୀନ ଚନ୍ଦ୍ରପରି ଦିଶେ ଅସୁନ୍ଦର,
'ବ' ଅକ୍ଷରେ ଲେଖା କାବ୍ୟ ଆଦର୍ଶ ହରାଇ"

ସୌନ୍ଦର୍ଯ୍ୟର ପଙ୍କପୁରୋହିତରୂପୀ ସେହି ଆଦର୍ଶକବିଙ୍କର ଭାଷାରେହିଁ ମୋର ଉତ୍ତରଟି ମୋର ଜରାଜୀର୍ଣ୍ଣ କ୍ଷୀଣକଣ୍ଠରେ ବାଢ଼ିବାକୁ ଇଚ୍ଛା ହେଲା। ଆଦର୍ଶ କବି ଅନ୍ୟତ୍ର ଲେଖିଛନ୍ତି—

"ନିଜ ମଧୁଚକ୍ର ମଧୁ ନ ଚାଖନ୍ତି ଯହିଁ ମଧୁକର।"

କବି-ମଧୁକର ଶ୍ରୀମାନ୍ କୃଷ୍ଣବିହାରୀ ସାକ୍ଷାତ୍ କୃଷ୍ଣବିହାରୀଙ୍କ ପରି ଚନ୍ଦ୍ରାବଳୀଙ୍କ କୁଞ୍ଜରେ ଏକ କଥା, ପୁଣି ଶ୍ରୀମତୀଙ୍କ କୁଞ୍ଜରେ ଉପସ୍ଥିତ ଅବସ୍ଥାରେ ଠିକ ତାର ବିପରୀତ କଥା। ହେବାର କଥା—କାରଣ ସେ ଆଦର୍ଶ-କବି।

ପୁଣି ଭାଷିଲେ—

"ନୀତି ମଳ ଗୀତଗୃପେ ଶୈଳୀସ୍ରୋତେ କାହିଁ
ଭାସିଗଲା କଳାରାଣୀ କାନ୍ଦି ଅଭିମ୍ବରେ।" ଇତ୍ୟାଦି।

"ନୀତି ମଳ ଗୀତ ଗୃପେ" ସେଥିରେ ଆଦର୍ଶକବିଙ୍କର କ୍ଷତି କଅଣ ? ସେ ତ ନୀତିବାଦୀ ( didactic ) କବିସମ୍ପ୍ରଦାୟର ଅଗ୍ରଯାଁ ନୁହନ୍ତି—ନୀତିଙ୍କର ଅକାଳମୃତ୍ୟୁ ବା ଅପମୃତ୍ୟୁରେ ତାଙ୍କୁ ଦଶାହ ଅଶୌଚ

ପାଳନ କରିବାକୁ ହେବ ନାହିଁ । ଗୀତ ବା କଣ ? ଏବଂ ତାହାର
ଅପମୃତ୍ୟୁର କାରଣ ବା କଅଣ, ଯଥାଯଥ ବୁଝିବା କଠିନ ହୁଏ କି ?
ଆଦର୍ଶ-କବି ଗୀତ ଓ ବାଦ୍ୟକୁ କି ଅର୍ଥରେ ଗ୍ରହଣ କରିଛନ୍ତି ବୁଝିବା,
ମାଦୃଶ ସ୍ଥୂଳବୁଦ୍ଧି ପକ୍ଷରେ ଏକରକମ ଅସମ୍ଭବ । ଉପେନ୍ଦ୍ର ଭଞ୍ଜଙ୍କ
କବିତା ଦୁରୂହ ଶବ୍ଦଯୋଜନାରେ ଦୁର୍ବୋଧ ହୋଇ ପଡ଼ିଲେହେଁ,
ଅଭିଧାନର ସାହାଯ୍ୟରେ ସେ ଦୁର୍ବୋଧତା ସହଜରେ ଦୂରୀଭୂତ ହୁଏ;
କିନ୍ତୁ ଏପରି ଭାବଗର୍ଭକ ଆଦର୍ଶକବିତାର ଭାବ ଗ୍ରହଣ କରିବା ଅନ୍ତତଃ
ମୋ ପକ୍ଷରେ ସ୍ଥଳବିଶେଷରେ ଅସମ୍ଭବ ହୋଇପଡ଼େ । ତାହାର
କାରଣ ମଧ୍ୟ ଅଛି । ଭାବଗର୍ଭକ କାବ୍ୟର ଅନ୍ତର୍ନିହିତ ଭାବରତ୍ନ
ଅନ୍ୟୂନ ଦଶ ମାସ ଦଶ ଦିନ ପୂର୍ଣ୍ଣ ନ ହେବାଯାଏ ପ୍ରକଟ ହେବେ ବା କିପରି ?
ପୁଣି ମହାଭାବଗର୍ଭକ ରହସ୍ୟବାଦୀ କବିତାର ମହାଭାବରତ୍ନ ଯଦି
ଠିକ ଏ ଅଳଃପଣିଆ କରି ଶୁକଦେବଙ୍କ ପରି ମାତୃଗର୍ଭରେ ଦ୍ୱାଦଶ ବର୍ଷ
ଲୁକ୍କାୟିତ ରହିବାକୁ ସୁଖ ମନେ କରନ୍ତି, ତେବେ ଆମ ଭଳିଆ
ଅବ୍ୟାସଦେବଙ୍କ କଥା ଯେ କିପରି ଶୋଚନୀୟ ହେବ ତାହା ସହଜରେ
ଅନୁମାନ କରାଯାଇ ପାରେ । ଏପରି ଅନ୍ତଃସତ୍ତ୍ୱା କବିତା ରାଣୀଙ୍କର
ଗର୍ଭସ୍ଥିତ ମହାଭାବରତ୍ନକୁ ପ୍ରକଟ କରାଇବାକୁ ଗଲେ ହୁଏ ତ କୌଣସି
ପ୍ରକାର ନବୀନପଦ୍ଧତିର ଅସ୍ତ୍ରୋପଚାରର ପ୍ରୟୋଜନ ହୋଇପାରେ ।
ଏହାକୁ ଆଦର୍ଶକବିମାନେ ରବୀନ୍ଦ୍ରନାଥଙ୍କ ରହସ୍ୟବାଦର ପ୍ରତୀକ
ମନେ କରି ଧରିକୁ ସରି ଜ୍ଞାନ କରି ଶିଖିଲେଣି ।

ଅବଶ୍ୟ କଳାରାଣୀ ଭାସିବାରୁ କଳାବିତ୍ କବିଙ୍କର ଦୁଃଖ କରିବାର
କଥା । କିନ୍ତୁ ସୁଖର କଥା, କଳାରାଣୀ ବାସ୍ତବିକ ଭାସି ଯାଇ ନାହାନ୍ତି—
ସେ ଭାରି ପ୍ଲବନମଙ୍ଗଳଶୀଳା ଥିବାରୁ ଖୁବ ଡୁବି, ଡୁବି ପହଁରି ପାରନ୍ତି
ଓ କିଛି ଦୂର ଭାସି ଯାଇ କବିଙ୍କୁ ଆଶ୍ୱାସନାର ବାଣୀ ଶୁଣାଉ ଅଛନ୍ତି—

"ଦୂରେ ଥିଲେ ପାଶେ ଅଛି, ଏହା ଥିବ ଜାଣି
କେତେ ଦୂରେ ଚନ୍ଦ୍ର, କେତେ ଦୂରେ କୁମୁଦିନୀ"

ପ୍ରୀତି ଅଭେଦ ତାଙ୍କର ।
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।
ଯେତେ ଦୂରେ ପଦ୍ମ ପଡ଼ିଥାଏ ରେ ନବୀନା
ଚାହାଁ ତ ନ ଯାଏ ସେହି ସୂର୍ଯ୍ୟନାମ ବିନା ?"

ଦେଖ, ଏବେ ତୁମର କଲ୍ୟାଣୀ ତପର ମସ୍ତକୋତ୍ତୋଳନ କରି ତୁମ୍ଭଙ୍କୁ ସଙ୍କେତ କରୁଛନ୍ତି । ଏତେ ପାଖରୁ କଅଣ ତୁମେ ତୁମର କଲ୍ୟାଣୀକୁ ଚହ୍ନି ପାରୁ ନାହଁ—ତୁମେ ତାହାହେଲେ ଭାରି ଦୂରଦର୍ଶୀ ଦେଖୁଛି । ଆଦର୍ଶ କବି କନା ? ଦେଖି ନ ପାରିଲ, କିନ୍ତୁ ଯୋଜନ-ଗନ୍ଧାଙ୍କର ଅଙ୍ଗସୌରଭ କଅଣ ବାରି ପାରୁ ନାହଁ ? ଦେଖ କପର ପ୍ରସରୁଛି ଏ ଜଗତୁ ସଉରଭଧାରା । ଦିଗ ଦିଗନ୍ତ ଉଚ୍ଛୁଳ ପଡ଼ୁଛି— ତୁମର ଔଦାସୀନ୍ୟରେ ଭାରି କ୍ଷୁଣ୍ଣ ହୋଇ—
ଭାଷିଗଲେ କଲ୍ୟାଣୀ କାନ୍ଦ ଆର୍ତ୍ତସ୍ୱରେ :—

"ରାହୁ ଦଶାପ୍ରାୟେ ମୋର;
ସୁଧାପାନ ଉତ୍ତାରୁ ଛେଦନ ହେଲା ଶିର"

ଭାରି ଦୁଃଖର କଥା ସତେ, ତୁମର ଛିନ୍ନମସ୍ତାକୁ ଆଉ ବା ଚହ୍ନିବ କପର ? ଆଦର୍ଶ କବି ତୁମେ, ତୁମର ତ ଏ ଦଶା । ଅକବି ମୁଁ— କିନ୍ତୁ ତୁମର କଲ୍ୟାଣୀଙ୍କ ଏହି ଓଡ଼ିଆଣୀସୁଲଭ 'ଶଙ୍କରାଭରଣ' ର ମୋହନମାଧୁରୀ ଯେଉଁଦିନ ମୋତେ ଭଲ ନ ଲାଗିବ, ମୋର ଏତିକି ପ୍ରାର୍ଥନା, ସେହି ଦିନଠାରୁ ମୋର ମୋହାନ୍ଧ ନୟନକୁ ଆଉ ଅରୁନ୍ଧତୀ ନ ଦିଶୁ । ପୁଣି—"ଗୀତ ମଲ୍ଲ ସ୍ୱତ ଶୃପେ", ଆଦର୍ଶ କବି ତୁମେ, ତୁମେ ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ଗୀତ ସଙ୍ଗେ ସ୍ୱୀତର ଧ୍ୱନିସାମଞ୍ଜସ୍ୟ ବା ଅନୁପ୍ରାସର ମୋହରେ ପଡ଼ି ଅର୍ଥବୋଧକୁ ଗୌଣ କରି-ଦେଲ । ତେଣୁ ମୋ ଭଳିଆ ସ୍ଥୂଳବୁଦ୍ଧି ପାଠକ ପକ୍ଷରେ 'ଗୀତ' ଓ 'ସ୍ୱୀତର ଅଭିଧା, ବ୍ୟଞ୍ଜନା ଓ ଲକ୍ଷଣା କିଛିହିଁ ର ସ୍ପଷ୍ଟ ଧାରଣା ହେଲା ନାହିଁ । ତୁମେ ଆଦର୍ଶ କବିର ଆସନମଣ୍ଡନ କରି ହୁଏ ତ ରହସ୍ୟବାଦ (mysticism) ର ଦ୍ୱାହି ଦେଇ ଆତ୍ମକ୍ଷାଳନ କରିବ, କିନ୍ତୁ ମୋର ଅବସ୍ଥା ହେଲା ଶୋଚନୀୟ

ତୁମେ କଳାନୈପୁଣ୍ୟ ପ୍ରକାଶ କର ସେଇ ଅନୁପ୍ରାସଭଙ୍ଗୀର ଆଶ୍ରୟ ନେଇ ତାହାର ଗୋଟିଏ ପ୍ରବର ପ୍ରଭୃତିର ଖବର ନିଆଯାଉ । ତାହାହେଲେ ତୁମେ "କା ଦାମ୍ଭାଦ ? ଏ କି ଦଶା ? କେଉଁ ଭୁଲ କରିଛ ମଣିନ"? ଏ ସବୁର ଖବର ତ ମିଳିବ । ଆଧୁନିକ ଯୁଗର କବି ରବୀନ୍ଦ୍ରନାଥ ମଧ୍ୟ ଅନୁପ୍ରାସର ମାହାତ୍ମ୍ୟ ସ୍ୱୀକାର କରିଛନ୍ତି—ତାଙ୍କର ଗୋଟିଏ ଗୀତ "ତୁମି ଅନନ୍ତ, ନବ ବସନ୍ତ, ଅନ୍ତରେ ଆମାର" । ଏହା ତୁମେ ଯେତେ ଥର ଓ ଯେତେ ଭାବରେ ଶୁଣିଥିବ ମୋ ଭାଗ୍ୟରେ ତାହା ଘଟି ନାହିଁ । ଏହି ଅନୁପ୍ରାସ-ମଧୁଶ୍ରୀ-ମାଧୁର୍ଯ୍ୟର ପ୍ରଥମ ପଥପ୍ରଦର୍ଶକ—ଅର୍ଥାତ୍ ଆମ ଦେଶରେ ? ଜୟଦେବଙ୍କ ସଂସ୍କୃତ ରଚନାକୁ ଏଠାରେ ବିଚାର କରି-ଯାଉ ନାହିଁ । ଉପେନ୍ଦ୍ରଭଞ୍ଜ ତାଙ୍କ ବୈଦେହୀଶବିଳାସର ଗୋଟିଏ ଛାନ୍ଦ ପୂରାପୂରି ଏହି ଅନୁପ୍ରାସଭଙ୍ଗୀର ଆଶ୍ରୟ କରି ଲେଖିଛନ୍ତି ।

(୮) ବାମଦେବ ଦେବଋଷି ଗୁରୁ ସଙ୍ଗତରେ
(୧) ଶମନେ ସୁମନେ ଗଲେ ସ୍ୱାଚସିଦ୍ଧି ସୀତେ;
(୨) ବନ୍ଦଇ ଅଙ୍କ ନନ୍ଦନ କୌଶଲ୍ୟାବଲ୍ଲଭେ
(୩) ବୋଇଲେ ପ୍ରବର ବର ଦଅ କାହିଁପାଇଁ ।

ଇତ୍ୟାଦି ଇତ୍ୟାଦି, ପ୍ରତ୍ୟେକ ପଂକ୍ତିରେହିଁ ଏହି ଅନୁପ୍ରାସଭଙ୍ଗୀଟି ଛାନ୍ଦଟିକୁ ଖୁବ୍ ସୁଖପାଠ୍ୟ କରିଅଛି । ରାଧାନାଥ ଏହାର ଅନୁକରଣ କରି ଚନ୍ଦ୍ରଭାଗାର ଶୈଳୀକୁ ଭାରି ଶ୍ରୁତିମଧୁର କରି ଦେଇଅଛନ୍ତି । ଯଥା—

(୧) 'ନାବିକ ଅଙ୍ଗିତ ରଙ୍ଗିଆ ଦେବୀ ବାଙ୍କୀ-ଈଶ୍ୱରୀ
(୨) ହାଟକ ଗଉରୀ କଟକ ଚଣ୍ଡୀ ନାଗସ୍ତବେଶେ
(୩) ଉତ୍କଳ-ଶକଟ ଭାରତ ପୁର ମହାମଙ୍ଗଳା ।
(୪) ମଣ୍ଡନ୍ତି ବଦନ ମଣ୍ଡଳ ଯେହୁ ସଦା ସୋହାଗେ ।

ଇତ୍ୟାଦି ଇତ୍ୟାଦି ।

ଲାବଣ୍ୟବତୀର ପଞ୍ଚଦଶ ଛାନ୍ଦ (ରାମଚରିତ) ରେ ଓ କେଶବ ରାମାୟଣର ଅଯୋଧ୍ୟାକାଣ୍ଡର ଜନ୍ମୋତ୍ସବାଂଶ ଛାନ୍ଦରେ ଏବଂ ବହୁ ପ୍ରାଚୀନ ସଙ୍ଗୀତରେ ମଧ୍ୟ ଏହାର ସମର୍ଥନର ନିଦର୍ଶନ ଅଛି ।

ଯଥା—

(୧) ଲଖେ ବହଲ ଆଖେ ସଖେ ଶଖେ ଚୂଳରେ

(୨) ସଜନି, ଆଜ ରଜନୀରେ ନଇଲେ ବ୍ରଜ ମୋହନ

ମନ କଏ ମୋ . ଲ ରେ ।

ଏଠାରେ କବିଗୁରୁଙ୍କୁ ଅଦରସପ୍ରବଣ ଜାଣି ପ୍ରଣାମ କଲି । ସେ ଜାଣି ଅନୁପ୍ରାସ-ପ୍ରବଣ । ତୁମ ଶୈଳୀର ଅନୁପ୍ରାସଭଙ୍ଗୀ କଅଣ ଏମାନଙ୍କ ସଙ୍ଗରେ କୌଣସି ସମ୍ବନ୍ଧର ସୂଚନା ଦେଉ ନାହିଁ ? ତୁମେ ରାଧାନାଥଙ୍କ ପ୍ରଭାବରେ ଏହା ଲେଖିଛ ସ୍ୱୀକାର କଲେ କଅଣ ତୁମର ମୌଳିକତା ଖର୍ବ ହେବ ? ରାଧାନାଥଶୈଳୀ ଉପେନ୍ଦ୍ରଶୈଳୀଠାରେ କେତେ ଋଣୀ ତାହା କଅଣ ସ୍ପଷ୍ଟ ଜଣାଯାଉ ନାହିଁ ? କଳାପ୍ରାଣୀ କଅଣ ସବୁ ସତେ ଭାସିଗଲେ; ନା ତୁମର କଳା-ବୋଧ ଦୋଷରୁ କଳାରେ କଳଙ୍କ ଭ୍ରମ ହେଲା ?

ପୁଣି, କବି ଆଦର୍ଶ ହରାଇଛନ୍ତି ବୋଲି ଭାରି ଦୁଃଖ କଲ । ତୁମେ ଯଦି କବିଙ୍କର ଆଦର୍ଶକୁ ଅଦେଖା କରି କବିଙ୍କ କୃତିରେ ତୁମର ନିଜର ଆଦର୍ଶ ଖୋଜିବ, ତେବେ ଦୋଷ କାହାର ? ତୁମେ ଯଦି ତୁମ ଆଦର୍ଶକୁ ସାର୍ବଭୌମ ମନେ କରୁଥାଅ, ତେବେ କବି ନିଶ୍ଚୟ ତୁମ ସଙ୍ଗରେ ଏକମତ ନୁହନ୍ତି । ଏପରି ଦୁର୍ବୁଦ୍ଧି ମୋର ଏକ ସମୟରେ ହୋଇଥିଲା । ଉଦୀୟମାନ କବି ରବୀନ୍ଦ୍ରନାଥଙ୍କର ଅଭିନବ ଶୈଳୀର ମୋହରେ ପଡ଼ି ଭାରି ଏକଦେଶଦର୍ଶୀ ହୋଇ ଯାଇଥିଲି । ମାଇକେଲ, ହେମଚନ୍ଦ୍ର, ନବୀନଚନ୍ଦ୍ର, ରାଧାନାଥ ଓ ଉପେନ୍ଦ୍ର ପ୍ରଭୃତିଙ୍କୁ ଅବର ଶ୍ରେଣୀରେ ପକାଇ ରବୀନ୍ଦ୍ରନାଥଙ୍କୁ ଏକମେବାଦ୍ୱିତୀୟଂ ମଣିଥିଲି । କିନ୍ତୁ ସେ ମୋହ ମୋର ବେଶୀ ଦିନ ରହିଲା ନାହିଁ । ଭକ୍ତିର ଉଷ୍ଣତା ହ୍ରାସ ସଙ୍ଗେ ସଙ୍ଗେ ସହାନୁଭୂତିବ୍ୟଞ୍ଜକ ଦୃଷ୍ଟିକୋଣ ଲାଭ କଲି—ମୋହାନ୍ଧତା କ୍ରମେ କ୍ରମେ କଟିଗଲା । କଳାର 'ଅନନ୍ତ-ଲୀଳା-କଲ୍ଲୋଳ-ବାରିଧି'ରେ କେତେବେଳେ କି ତରଙ୍ଗ ଉଠି ପାରେ, ଭାବି ଭାବି ଚିତ୍ତ ଏକ ସମଦୃଷ୍ଟିସମ୍ପନ୍ନ ହେଲା । ଭାବିଲି, ଅଭିନୟଟି ସର୍ବାଙ୍ଗସୁନ୍ଦର କରିବାକୁ ଗଲେ ରଙ୍ଗମଞ୍ଚରେ ସାନ ବଡ଼ ସମସ୍ତ ଅଭି-

ନେତୃବୃନ୍ଦର ସହଯୋଗ ଓ ସାହଚର୍ଯ୍ୟର ଦରକାର । କେବଳ ଏକ ପ୍ରକାର ମନୋଜ୍ଞ ପୁଷ୍ପରେ ବୈଜୟନ୍ତୀମାଳା ଗୁନ୍ଥାଯାଇ ନ ପାରେ । ଏକରକମ ଖାଦ୍ୟରେ ଶରୀରର ସର୍ବାଙ୍ଗୀଣ ଉନ୍ନତି ଅସମ୍ଭବ ; ଷୀରସ୍ଥିରଚିତ୍ତରେ ଏହାପରି ବହୁତ ଜଳ୍ପ କଳ୍ପ ଶେଷରୁ ବୃଷୀମୂର୍ତ୍ତି ଯାଷ୍ଟା ଗ୍ରହଣପୂର୍ବକ ଭାବୀ ମହୋଦୀରପନ୍ଥୀ ହୋଇ ପଡ଼ିଲି ।

ପୂର୍ବରେ ଭ୍ରମର ପଂକ୍ତିର ଅନୁପ୍ରାସଭଙ୍ଗୀ ବୋଲି ଯାହା ବର୍ଣ୍ଣାଇଲି ତାହା ଯେ ଜାତିର ଅପରିହାର୍ଯ୍ୟ ଅଙ୍ଗ ବସ୍ତ୍ର ଅଙ୍ଗସୌଷ୍ଠବବୃଦ୍ଧିର ଗୋଟିଏ ମୁଖ୍ୟ ଉପାଦାନ, ଏମନ୍ତ ନୁହେ । ମୋର ବକ୍ତବ୍ୟ ଏହି ଯେ ଯେପରି କୌଣସି ପରିବାରର କୌଣସି ବଶିଷ୍ଟତା ସେହି ପରିବାରର ପ୍ରତ୍ୟେକ ବ୍ୟକ୍ତିଙ୍କଠାରେ ବିଦ୍ୟମାନ ଥାଏ । ତାହା ଅଙ୍ଗଗଠନ, କ କଣ୍ଠସ୍ୱର ବା ଗମନଭଙ୍ଗୀ ପ୍ରଭୃତି କୌଣସି ନା କୌଣସି ଅପ୍ରଧାନ ଅଂଶରେ ପରିସ୍ଫୁଟ ଦେଖାଯାଏ । ସେଥିରୁ ସେମାନଙ୍କର ମାନବଜାତିର ପରିଚୟ ନ ମିଳି ପାରେ, କିନ୍ତୁ ତାହା ସେମାନଙ୍କର ପାରିବାରିକ ସମ୍ପର୍କର ପରିଚୟ ପ୍ରଦାନ କରେ ମାତ୍ର । ସେହିପରି ଓଡ଼ିଆ ଅମେ —ଉତ୍କଳ ବାଣୀପୀଠର କଳକଣ୍ଠ ଗାୟକମାନଙ୍କ କର୍ଣ୍ଣରସାୟନ ସଙ୍ଗୀତଲହରୀ ଅମ୍ଭମାନଙ୍କର ପୂର୍ବପୁରୁଷମାନଙ୍କ ହୃଦୟସିନ୍ଧୁରେ ଯେ ତରଙ୍ଗ ଖେଳାଇଛି, ତାହା ସଂସ୍କାରରୂପରେ ଅମ୍ଭମାନଙ୍କ ହୃଦୟରୁ ଆଶ୍ରୟ କରି ରହିଛି—ଅମ୍ଭମାନଙ୍କର ରକ୍ତ ସଙ୍ଗରେ ମିଶି ପ୍ରତି ଧମନୀରେ ବ୍ରହ୍ମାବାନ୍ ହୋଇ ପଡ଼ିଛି । "ବାଜା ବାଜିବ ବୁ ନାହି ଲକ୍ଷଣ ଶବଦ" କାନରେ ପଡ଼ିଲା ମାତ୍ରକେ ଅମ୍ଭମାନଙ୍କର ହୃଦୟବୀଣା ସ୍ୱତଃ ବାଜି ଉଠେ । ତାହାର ଉପାୟ କଅଣ ? "ସ୍ମୃତି ତ କଦାପି ନୁହେ ଫିଙ୍ଗିବାର" । ସଂସ୍କାର ତ ପୂର୍ବଜନ୍ମର ଅଲବ୍ଧ ସ୍ମୃତି ମାତ୍ର । ଅମ୍ଭେମାନେ ଯେତେ ନବୀନପନ୍ଥୀ ହେଉଁ ପଛକେ, ଯେତେ ପ୍ରଗତିପନ୍ଥୀ ବା ପରଗତିପନ୍ଥୀ ହେବଁ ପଛକେ, ଅମେ ଯେ ନିର୍ଭୁଲ ଓଡ଼ିଆ; ଅମ୍ଭେମାନେ ଯେ ଉପେନ୍ଦ୍ରପରିବାରୀ ବା ଗୁଧନାହାଗୋଷ୍ଠୀ, ସେହା ବଦଳିବ କିପରି ? ଯେତେ ନବକଳେବର ଧାରଣ କରୁଁ ପଛକେ, ଚଉଦ ବର୍ଷରୁ ତ ଅଧିକ

ନୁହେଁ । ଠିକ ସିଂହଚର୍ମ୍ମାବୃତ ଗର୍ଦ୍ଦଭ ପରି ନ ହେଉ, ବରସ୍ତାନ ଧର୍ମ୍ମାବଲମ୍ବୀ ଜନେମାନଙ୍କ ପରି କ୍ଷେତ୍ରକୁ ଧରା ପଡ଼ିବାହିଁ ସୁନିଶ୍ଚିତ । ଜନପ୍ରଶ୍ନର ସମସ୍ତେ ବହୁପୂର୍ବରୁ କରସ୍ତାନ ହୋଇ ସୁଦ୍ଧା କୋଟାଗର ପୂଷ୍ଟମାନ୍ନ ଘର ଲିପ ପୋଛା କରି ଝୋଟି ଅଲ୍ପିନା ଦେଉଥିବା ଦେଖି ପାଦ୍ରୀ ସାହେବ ବିରକ୍ତ ହୋଇ ପଚାରିଲେ "ଏ କଅଣ ତୁମେମାନେ ପରା କରସ୍ତାନ ହୋଇଛ ?" ସେମାନେ ଅମ୍ଳାନବଦନରେ ମୁକ୍ତକଣ୍ଠରେ ଉତ୍ତର କଲେ—"ଅମ୍ଭେମାନେ କରସ୍ତାନ ହୋଇଛୁ ବୋଲି କୁଳଧର୍ମ୍ମ ସବୁ ଛାଡ଼ିବୁ ନା କଅଣ ?" ଉତ୍ତର ଶୁଣି ସାହେବଙ୍କ ବୁଦ୍ଧି ବଣା । ଅମ୍ଭମାନଙ୍କର ଦଶା ଠିକ ସେହିପରି ନୁହେ କି ? ମୁଁ ବଙ୍ଗଦେଶ ପ୍ରଚଳିତ କୀର୍ତ୍ତନରସରେ ଆଜୀବନ ମଗ୍ନ ଥାଇ ସୁଦ୍ଧା ଅମର ଉପେନ୍ଦ୍ର ଲ୍ୟା, ଶଙ୍କରାଭରଣ, ଶ୍ରେଣୀ ପ୍ରଭୃତି ନିକୁଳ ଓଡ଼ିଆ ବୃତ୍ତଗୁଡ଼ିକର ଉନ୍ମାଦନା ଶକ୍ତି ଭୁଲି ନାହିଁ କି ଭୁଲିବ ନାହିଁ । "ଶ୍ରୀରାଧା ବାତୁଲୀର" କଥା ଛାଡ଼ ।

ପୁନଶ୍ଚ ବୈଦେହୀଶବିଳାସ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ଲାବଣ୍ୟବତୀ ପ୍ରଭୃତି କାବ୍ୟଗ୍ରନ୍ଥକୁ ଏକାବେଳକେ ଅଦର୍ଶନିବକଣ୍ଠ ମନେ କରି ବସିଲେ, ତେବେ ବୁଝିବାକୁ ହେବ ଯେ ଅମ୍ଭମାନଙ୍କ ପୂର୍ବପୁରୁଷମାନେ ଭାରି ବର୍ବରତାଚ୍ଛନ୍ନ ବଣ ଓଲୁ ଥିଲେ । ତାହା ନ ହେଲେ ସେମାନେ କପରି ବା ଏପରି ଅକବିଗୁଡ଼ାକୁ ଏକାବେଳକେ ମୁଣ୍ଡରେ ବସାଇ ପୂଜା କରୁଥିଲେ । ମନେ କର ଏ ଦେଶ ଘୋର ବର୍ବରତାଚ୍ଛନ୍ନ ଥିଲା ଏବଂ ସମସ୍ତ କଳଙ୍କ-ପଙ୍କିଳ କସ୍ପିନ୍ୟାର ଅନ୍ତର୍ଭୁକ୍ତ ଥାଇ ଡାରଉଇନଙ୍କ କ୍ରମବିକାଶବାଦର ଜୀବନ୍ତ ଓ ଜ୍ୱଳନ୍ତ ସମର୍ଥନ ରୂପେ ବିଦ୍ୟମାନ ଥିଲା । ଯେଉଁମାନେହିଁ ଶ୍ରୀରାମଚନ୍ଦ୍ରଙ୍କ ସେତୁବନ୍ଧନର ସହାୟତା କରିଥିଲେ ସେହିମାନେହିଁ ପରବର୍ତ୍ତୀ ଯୁଗରେ ଖାରବେଳଙ୍କ ଭାରତବିଜୟ ଅଭିଯାନରେ ଯୋଗ ଦେଇ କାଠଯୋଡ଼ିର ପ୍ରସ୍ତର ବନ୍ଧ ପ୍ରଭୃତି ନିର୍ମାଣ କରିଥିଲେ । କୋଣାର୍କ ଓ ଭୁବନେଶ୍ୱରର କଳାସୌଷ୍ଠବ ପୁଣି ସମ୍ଭବ ହୋଇ କପରି ? ଅମ୍ଭମାନଙ୍କ ପୂର୍ବ ପୁରୁଷମାନେ ଭାରି ବୀରଜାତି ଥିଲେ ଓ ବାଣିଜ୍ୟ କରିବାକୁ ଯାଇ ଯାଭା, ସୁମିତ୍ରା ପ୍ରଭୃତିରେ ଉପନିବେଶ

ସ୍ଥାପନ କରିଥିଲେ ଇତ୍ୟାଦି ଇତ୍ୟାଦି ନାନା ଭାବରେ ତାଙ୍କର ଗୌରବ ନେଇ ଅସ୍ପାଳନ କରିବୁଁ ବା କିପରି ? ମହାପ୍ରଭୁଙ୍କ ଆଗମନର ବହୁ ବର୍ଷ ପୂର୍ବରୁ ବାଲେଶ୍ୱରର ମୟୂରକଣ୍ଠି ଗ୍ରାମରେ ଜନ୍ମଗ୍ରହଣ କରି ସ୍ୱନାମଧନ୍ୟ ଶ୍ରୀ ଶ୍ରୀଧର ସ୍ୱାମୀ ନିଖିଳ-ଭାଗବତ-ବ୍ୟାଖ୍ୟାକାର-ମୌଳିମଣ୍ଡନ-ରୂପେ ପ୍ରଭୂତ ଖ୍ୟାତି ଅର୍ଜନ କରିଥିଲେ ବା କିପରି ?

ଯଦି ସ୍ୱୀକାର କରିବାକୁ ବାଧ ହେଉଁ ଯେ ଓଡ଼ିଶାର ଲୁପ୍ତଗୌରବ ଦୃଷ୍ଟିରେ, ଆମ୍ଭେମାନେ ଆମ୍ଭମାନଙ୍କର ପୂର୍ବପୁରୁଷମାନଙ୍କ ତୁଳନାରେ ତେର ତଳକୁ ପଡ଼ିଅଛୁଁ ଓ ସେମାନଙ୍କର ଶୌର୍ଯ୍ୟ, ବୀର୍ଯ୍ୟ ଓ ଔଦାର୍ଯ୍ୟର ଉଚ୍ଚ ଆଦର୍ଶରୁ ସ୍ଖଳିତ ହୋଇ ରହିଅଛୁଁ, ତେବେ ସେମାନଙ୍କର ବରଣୀୟ କାବ୍ୟାଦର୍ଶ ସଙ୍ଗରେ ଆମ୍ଭମାନଙ୍କର କାବ୍ୟ ବା କଳାର ଆଦର୍ଶ ଯଦି ମେଳ ନ ହୁଏ, ତେବେ ଆମ୍ଭମାନଙ୍କୁ ଅସ୍ପାଳନ କରିବାଟା ସାଜିବ କି ? ଏକଥା ଧୀରସ୍ଥିର ଚିତ୍ତରେ ନ ଭାବି ଭାଷା ଅସହିଷ୍ଣୁତାର ପରବଶ ହୋଇ ଯାହା କହିଲେ ସେଥିରେ କେତେ କୋଟି ନରନାରୀଙ୍କ ହୃଦୟରେ ଶେଳବିଦ୍ଧ କରିଦେବ, ତାହା ଭାବି ଦେଖିଛ ? ଅପ୍ରିୟ ସତ୍ୟ କଥଣ' ନ କହିଲେ ନୁହେଁ । ଏଟା ପୁଣି ସତ୍ୟ କି ନିପଟ ମିଥ୍ୟା ତାହାର ପ୍ରମାଣ ତୁମକୁ ମିଳି ନାହିଁ । ମହତର ମର୍ଯ୍ୟାଦାଲଙ୍ଘନରୂପ ମହାପାତକ ଆଉ ନାହିଁ କହିଲେ ଚଳେ ।

ତୁମେ କେଉଁ ଅଧିକାରବଳରେ ଗୋଟିଏ ଜାତୀୟକବିର ମର୍ଯ୍ୟାଦା ଲଙ୍ଘନରେ ଏପରି ଦୁଃସାହସିକତା କଲ, ମୁଁ ଭାବି ପାରୁ ନାହିଁ । ଧୈର୍ଯ୍ୟର ସହିତ ସହାନୁଭୂତିର ଦୃଷ୍ଟିକୋଣରୁ ଉତ୍କଳସାହିତ୍ୟସେବା ଯାହାର ଭାଗ୍ୟରେ ଘଟି ନାହିଁ, ସେ ତାହାର ଉପାଦେୟତା ହୃଦୟଙ୍ଗମ କରିବ କିପରି ? କିଛିହିଁ ନ ପଢ଼ି, ତାଙ୍କର ସୁବିଜ୍ଞ ସମାଲୋଚକରୂପେ ତାଙ୍କୁ ନିର୍ବାସନଦଣ୍ଡରେ ଦଣ୍ଡିତ କରିବା ଉଚ୍ଛୃଙ୍ଖଳତାର ଓ ଦାମ୍ଭିକତାର ପରିଚାୟକ ହୋଇ ପାରେ; ବିଜ୍ଞତାର ବା ରସିକତାର ନୁହେଁ ।

ଗୋଟାଏ କଥା ବିଚାର କରିବାକୁ ଅନୁରୋଧ କରେ—ରବୀନ୍ଦ୍ରନାଥ, କାଳିଦାସ ଓ ସେକ୍ସପିଅରଙ୍କ ତୁଳନାରେ ଉପେନ୍ଦ୍ରଙ୍କ ସ୍ଥାନ ନିରୂପଣ

ଅସମ୍ଭବ । ସେ ବିଶ୍ୱକବି ହେବାର ଦୁରାକାଙ୍କ୍ଷା କେବେହେଁ ପୋଷଣ କରି ନ ଥିଲେ, କାରଣ ସେ ଓଡ଼ିଆ ଓ ଉତ୍କଳର ନରନାରୀଙ୍କ ହୃଦୟ ଉପରେହିଁ ସେ ଏକଚ୍ଛତ୍ର ରାଜତ୍ୱ କରି କବିସମ୍ରାଟ ବୋଲାଉଥିଲେ । ଏ ପରି ଗଣତନ୍ତ୍ରର ଯୁଗ ଓ ଆଦର୍ଶ କବିମାନେ ପରି ଅଛି ଗଣସାହିତ୍ୟ-ପ୍ରଣୟନରେ ଏକାବେଳେକେ ଚତୁର୍ମୁଖ ହୋଇପଡ଼ୁଛନ୍ତି । ନେହ୍ଠ ନେଳ ଦେଖାଯାଉ, ଅଛି ସହଜରେ ଜନତାର ହୃଦୟ ସ୍ପର୍ଶ କରିବ କିଏ ? କୌଣସି ଆଧୁନିକ ପ୍ରଗତିପନ୍ଥୀ କବି ନା ଉପେନ୍ଦ୍ରଭଞ୍ଜ ? ଅବଶ୍ୟ ଏଠାରେ ଜଣେ ସୁଦକ୍ଷ ପରିବେଶନକାରୀ ଲୋଡ଼ା । ତେବେ ରବୀନ୍ଦ୍ରନାଥଙ୍କ କଥା ସ୍ୱତନ୍ତ୍ର । ସେ ଯେପରି ଅଘଟନ-ସଂଘଟନ-ପଟୀୟସୀ-ଲୀଳାଶକ୍ତିର ଅଧିକାରୀ ଅନ୍ୟତ୍ର ତାହାର ତୁଳନା ନାହିଁ । କିନ୍ତୁ ତାଙ୍କର ଅନୁକରଣକାରୀ ଓ ଅନୁସରଣକାରୀଙ୍କ ଦଶା ଶୋଚନୀୟ ଅଟେ ।

ମୋର ଉଲ୍ଲିଖିତ ମନ୍ତବ୍ୟରୁ ଅନେକେ ମନେ କରି ସାରିଲେଣି ଯେ ମୁଁ ଉଭୟ ସନାତନପନ୍ଥୀ ଏବଂ ନବଯୁଗର ପ୍ରଗତିପନ୍ଥୀମାନଙ୍କର ଘୋର ପରିପନ୍ଥୀ । କିନ୍ତୁ ମୁଁ କୌଣସି ଏକ ବିଶିଷ୍ଟ ପନ୍ଥାର ଝଣ୍ଡାଧାରୀ ପଥିକ ନୁହେଁ । ମୁଁ ଯାହାର ଖାଏଁ, ତାହାର ଗାଏଁ । ମୁଁ ନିମକହରାମ ନୁହେଁ । ଯେଉଁ ପନ୍ଥୀଙ୍କ ଛାଉଣୀରୁ ମୋତେ କଣିକାଏ ବାଲ୍ୟଭୋଗ ମିଳିଲା, ମୁଁ ସେହିଠାରେହିଁ ତୁହୁରପରି ପଡ଼ିଥାଏଁ । "ଫେଲ୍-ଲବ" ବା କୈବଲ୍ୟ କଣିକାଏ ଯେଉଁ କୁଞ୍ଜରୁ ମିଳୁଛି, ସେହିଠାରେହିଁ ଜୀବନ ବିକି ଦେବାର ଇଚ୍ଛା । ମୋର ଜାତି ନାହିଁ କି ପତି ନାହିଁ, କି ବାରବଗୁର ମଧ୍ୟ ନାହିଁ । ଏ ଦଗରେ ମୋର ଅଘୋର ଦୀକ୍ଷା କହିଲେ ଚଳେ । "ଯେତେଣେ ଇଚ୍ଛା ତେଣେ ଯା, ପେଟ ଘେନ ବୁଲୁଥା ।" ଏହାହିଁ ମୋର ଜୀବନର ବୀଜମନ୍ତ୍ର । ମହୋଦରପରାୟଣ ଅବଧୂତ ସମ୍ପ୍ରଦାୟର କୃଷ୍ଣମନ୍ତ୍ରୀ ଦୀକ୍ଷାରୁ ମୋର ମହୋଦାରତ୍ୱର ପରିଚୟ ମିଳିବ । ମାତାଙ୍କ ମୁହଁରୁ ଶୁଣିଥିବା: "କୃଷ୍ଣ ଗଲେ ମଧୁପୁରୀ, କି ଘେନ ବଞ୍ଚିବା ଗୋପସୁନ୍ଦରୀ, ଏବେ କଂସ ତ ହେଲା ଭଗାରି ସଜଳାରେ ।" ଏହାଠାରୁ ଆରମ୍ଭ କରି ଉତ୍କଳବାଣୀପୀଠର ମୁଖଶାଳ 'ଆନନ୍ଦବଜାର' ବାଟେ ଭାରତର ବିଖ୍ୟାତ ବିଖ୍ୟାତ ଅନୁଷ୍ଠାନ ଦେଇ ଓ ଶ୍ୱେତ

ଦ୍ୱୀପର ବଡ଼ ବଡ଼ ହୋଟେଲ ମାନଙ୍କରେ ଦୀର୍ଘକାଳ ବାସ କରି ଏମନ୍ତ କି ଓମାର ଖାୟାମଙ୍କ ପରିଶସ୍ତ୍ର ପ୍ରୀତିଭୋଜନରେ ମଧ୍ୟ ଯୋଗ ଦେଇ ନିଜର ଭ୍ରମଣ ଧନ୍ୟ ମନେ କରୁ ଅଛି। ଅଙ୍ଗ, ବଙ୍ଗ, କଳିଙ୍ଗ, ମଗଧ ଓ ବୃନ୍ଦାବନର ନାନା ଅନ୍ଧସନ୍ଧିରେ ପଦ ପକାଇଥିଲେବେ ମୋର 'ଦିନଲ୍ଲଗ୍ନି' ଥିଲେ ରବି, ରାଧାନାଥ, ଉପେନ୍ଦ୍ର ଓ ଜୟଦେବ। ବର୍ତ୍ତମାନ ବୟୋବୃଦ୍ଧି ସଙ୍ଗେ ସଙ୍ଗେ ବାୟୁବୃଦ୍ଧିର ପ୍ରକୋପକୁ ଲକ୍ଷ୍ୟ କରି ଗୁରୁପାକସବୁ ବର୍ଜନ-ପୂର୍ବକ ଅପେକ୍ଷାକୃତ ଲଘୁପାକ ବୈଷ୍ଣବୀ କବିତାକୁ ବାଛି ବାଛି କିଛି କିଛି ସେବା କରି ଦିନ କଟାଉଛି। ବେଳେ ବେଳେ ସ୍ୱାଭାବିକ ଔଦରିକ ଦୋଷଟା ଛାଡ଼ି ନ ହେବାରୁ ଜିହ୍ୱାଲ୍ଲଲଷାଟା ଦୁର୍ନିବାର ହୋଇ ଉଠେ। ସେଦିନ ୰ନାରାୟଣ ତ୍ରିପାଠୀଙ୍କ ନୂତନ କାବ୍ୟଗ୍ରନ୍ଥ ବୈଦେହୀ-ବିଳାସର ପାଣ୍ଡୁଲିପି ପାଠ କରୁଁ କରୁଁ ଏପରି ତନ୍ମୟ ହୋଇ ପଡ଼ିଥିଲି ଯେ କଏ କେତେବେଳେ ଅସି ମୋର ସ୍ୱପ୍ନଭୋଜନ ବୁଧଟିକ ନିଃଶେଷ କରି 'ବୃଷଦଂଶରୂପେ ପଳାୟିତ ମୋର ପାଶୁ'; ମୁଁ କିଛିହିଁ ଜାଣି ପାରି ନ ଥିଲି। ପ୍ରକାଶଥାଉକି, କେବଳ ନାମକରଣରୁ ଉତ୍କଟ ଉପେନ୍ଦ୍ର ଭକ୍ତିଅ ଗନ୍ଧ ପାଇ, ସେଦିନ ବିଶ୍ୱବିଦ୍ୟାଳୟର କୃତବିଦ୍ୟ ଚକ୍ରବର୍ତ୍ତୀ ଗ୍ରାହକମାନେ ଉକ୍ତ ପାଣ୍ଡୁଲିପିଟିକୁ ଅବର୍ଜନାସ୍ତୂପରେ ବିସର୍ଜନମାନ କରିଇବାକୁ ରାଜି ହୋଇଛନ୍ତି। ଏଥିରୁ ମୋର ରୁଚି ପରିଚୟ ମିଳିଯିବ। ଏହି ଜିହ୍ୱାଲ୍ଲଲସାର ବଶବର୍ତ୍ତୀ ହୋଇ ମୁଁ ଧଡାଡ଼୍ ଭଲ ମନ୍ଦ ବୁଝି ପାରେ ନାହିଁ। ଆଦର୍ଶ ମଙ୍ଗଳ କି ରହିଲା ଏକଥା ବିଚାର କରିବାର ସହିଷ୍ଣୁତା ମୋର ନ ଥାଏ। ଭଲ ଲାଗିଲା ତ ଗ୍ରାସେ ଚୁଙ୍କି ଦେଲି। ଏଥିରେ ପେଟ ପୂରେ—ଉପାଧି ରହୁ ବା ନ ରହୁ ଉପଧା ତ ଅଛି।

ମୋତେ ଭୁଲ ବୁଝିବାର ଆହୁରି ଗୋଟାଏ ସ୍ଥାନ ମଧ୍ୟ ଅଛି। କେହି କେହି କହନ୍ତି ଯେ ମୋର ଲେଖ ରେ ଧର୍ମର ବା ଭକ୍ତିର କିଛି ନା କିଛି ଛାୟା ପଡ଼ିଯାଏ। ଏତେ ସାଧ୍ୟସାଧନକୁ ମୋର ପାଷଣ୍ଡହୃଦୟରେ ଧର୍ମର ତଥା ପ୍ରେମ ଭକ୍ତିର କୌଣସି ଦାଗ ପଡ଼ିଥିଲା ପରି ମୋତେ ଲାଗେ ନାହିଁ। ତେବେ ଏତେ ସାବଧାନ ହେଉଁ ହେଉଁ ମୋର ଲେଖାରେ

ଧର୍ମ ବା ଭକ୍ତିର ସ୍ପୃହା କିପରି ପଡ଼େ, ତାହାହିଁ ଭାବିବାର କଥା । ହାତେ ମାପି ବୁଝିଶୁଝି ଚାଲିବାହିଁ ହେଲା ଯୁଗଧର୍ମ । ଏହା ମୁଁ ଭଲ କରି ଜାଣେ ଓ ଆହୁରି ଜାଣେ ଯେ ହିତୋପଦେଶକର୍ତ୍ତା ଗ୍ରନ୍ଥମାନଙ୍କର କୌଣସି ନିର୍ଦ୍ଦେଶ ନ ଥିଲେହେଁ ଧର୍ମଠାରୁ ଦୂରରେ ଅନ୍ତତଃ ନିରାପଦ ସ୍ଥାନରେ ରହିବା ମଧ୍ୟ ସେହି ଯୁଗଧର୍ମର ଗୋଟିଏ ବିଶିଷ୍ଟ ଅଙ୍ଗବିଶେଷ । ପୁଣି କବିତାରେ ଧର୍ମର ସ୍ଥାନ ଅତି ଗୌଣ; ଏମନ୍ତ କି ଦର୍ଶନ ବା ଦାର୍ଶନିକ ତତ୍ତ୍ୱର ସ୍ଥାନ ମଧ୍ୟ ଖୁବ୍ ଗୌଣ । ତେଣୁ ମୋର କ୍ଷୁଦ୍ରମତରେ ଗୀତାଞ୍ଜଳି ରବୀନ୍ଦ୍ରନାଥଙ୍କ ସର୍ବୋତ୍କୃଷ୍ଟ ଅବଦାନ ନୁହେ । ତେଣୁ ରାଧାନାଥଙ୍କ "କେହି ରହି ନାହିଁ ରହିବେ ନାହିଁ ଟି ଭବରଙ୍ଗଭୂମି ତଳେ" ଏହି ଭାବଗର୍ଭକ ପଂକ୍ତିଟିଠାରୁ "ଅଟକିବ ଜାଣିଥିଲି ଛଟକିଣୀ ସଜନୀ ବୋଇଲା ହସି" ଅଂଶଟି କଳାଦୃଷ୍ଟିରେ ମୋ ମନକୁ ବେଶୀ ଭଲ ଲାଗେ । ଡେସ୍‌ଡେମୋନା ( Desdemona ) ଯେତେବେଳେ ସବୁ ଦୋଷ ନିଜ ମସ୍ତକରେ ବହନ କରି ଚିରବିଦାୟ ନେଲେ ଏବଂ ଶକୁନ୍ତଳା ଯେତେବେଳେ ସବୁ ଦୋଷ ନିଜ ଭାଗ୍ୟଉପରେ ପକାଇଦେଇ ଦୁଷ୍ମନ୍ତଙ୍କୁ ସାଦରେ ଗ୍ରହଣ କଲେ, ପ୍ରକୃତ ପ୍ରେମର ମହୋଜ୍ଜ୍ୱଳ ସ୍ୱାର୍ଥତ୍ୟାଗର ଚିରଦେଦୀପ୍ୟମାନ ଦୃଷ୍ଟାନ୍ତରୂପେ ଉକ୍ତ ଦୃଶ୍ୟ ଦୁଇଟି କାହାକୁ ଭଲ ନ ଲାଗିବ ? ସେ ଦୃଶ୍ୟ ଦୁଇଟି ମୋର ହୃଦୟର ଗଭୀରତମ ପ୍ରଦେଶକୁ ସର୍ବଦା ନିବିଡ଼ ଭାବରେ ଆଲୋଡ଼ିତ କରି ପକାଏ । ଏହାହିଁ କଳାସୃଷ୍ଟି ଓ ଏହାହିଁ କବିତାର ଆଦର୍ଶ । ତେଣୁ ଗୀତାର ସର୍ବଧର୍ମସମନ୍ୱୟବାଦ ଦର୍ଶନ ଶାସ୍ତ୍ରର ଶେଷ ପରିଣତିରୂପରେ ମୋର ଚିର ନମସ୍ୟ ହୋଇ ରହି-ଥିଲେହେଁ କବିତା ହିସାବରେ କେବେହେଁ ପ୍ରାଣ ସ୍ପର୍ଶ କରିନାହିଁ । ବରଂ ଶ୍ରୀମଦ୍‌ଭାଗବତର ଲୀଳା-ବର୍ଣ୍ଣନା-ଗୁଡ଼ିକ ଭାରି କାବ୍ୟମୟୀ ହୋଇଥିବାରୁ ଭାରି ପ୍ରାଣସ୍ପର୍ଶୀ ହୋଇଅଛି ; —ତାହାର ଦର୍ଶନ ( Philosophy ) ପାଇଁ ନୁହେଁ, ତାହାର କବିତାପାଇଁ ( for-its-poetry ,—ତାହାର ଧର୍ମତତ୍ତ୍ୱର ବ୍ୟାଖ୍ୟାନ ପାଇଁ ନୁହେଁ; ତାହାର ଲୀଳା-ରସ—ପରିବେଶନ ପାଇ ; ତାହାର ଷଡ଼ ଦର୍ଶନର ସମନ୍ୱୟବାଦ ପାଇଁ ନୁହେଁ; ତାହାର

ନିଖିଳ ରସାମୃତ-ସିନ୍ଧୁର ଅଖିଳରସର ସମାବେଶ ପାଇଁ । କାରଣ ଭାଗବତକାର ବିଶୁଦ୍ଧ ଦାର୍ଶନିକ ନୁହନ୍ତି; ସେ ନିଖିଳ କବିଚୂଡ଼ାମଣିଙ୍କ ମହତ୍ତମଣି ଅଟନ୍ତି । ଏଥିରୁ କବିତାର ତୁଳନାରେ ଧର୍ମ ବା ଦର୍ଶନ ପ୍ରତି ମୋର ମନୋବୃତ୍ତିର ଅଭାବ ମିଳିବ ।

କିନ୍ତୁ ଶ୍ରୀକୃଷ୍ଣଙ୍କ ହସ୍ତରେ ନିଜର ମୃତ୍ୟୁ ଅବଶ୍ୟମ୍ଭାବୀ—ଏହା ଭାବି ଭାବି କଂସ ଯେପରି ତାହାର ବିଭୀଷିକାଗ୍ରସ୍ତ କଳ୍ପନାନୟନରେ ଶ୍ରୀକୃଷ୍ଣଙ୍କୁ ସଦାସର୍ବଦା ମୃତ୍ୟୁରୂପେ ବିରାଜମାନ ଦେଖୁଥିଲା, ସେହିପରି ଯେଉଁ ସହୃଦୟ ପାଠକ ପାଠିକାମାନଙ୍କର ଧର୍ମର ନାମ ଶୁଣିଲା ମାତ୍ରେ ଚିତ୍ତରେ ଛନକା ପଶେ ସେମାନେ ନ ଥିଲା ସ୍ଥାନରେ ମଧ୍ୟ ଧର୍ମର ମନୋମୟୀ ମୂର୍ତ୍ତି ଯେ କଳ୍ପନା କରି ବସିବେ, ଏଥିରେ ସନ୍ଦେହ କାହିଁ ? ରଜ୍ଜୁରେ ସର୍ପଭ୍ରମ ଓ ଧୂମ୍ରରାଶିରେ ଜଳଦ ଭ୍ରମ ପରି ଏହା ମଧ୍ୟ ମୋର ଆଦର୍ଶବାଦରେ ସାମ୍ପ୍ରଦାୟିକତାବାଦର ଭ୍ରମ ମାତ୍ର । ଇତି ।

ଶ୍ରୀ ଅନନ୍ତମନ୍ଦୂର୍ଧଣମସ୍ତ ।

—ପ୍ରଥମ ଭାଗ ସମାପ୍ତ—



ମହାରାଜା ଶ୍ରୀ ରାମଚନ୍ଦ୍ର ଉତ୍କଳ ଯୁନିଅର୍ସିଟି ପ୍ରେସରେ
ଶ୍ରୀ ପଦ୍ମଚରଣ ଦାଶଙ୍କ ଦ୍ୱାରା ମୁଦ୍ରିତ—୧୯୬୨ । ନଂ ୨୪୮ ତା ୧୭-୧୦-୬୨

